# ଚମତ୍କାରର ରହସ୍ୟ

(ହେତୁବାଦୀ ବିଚାର)

ଏଥିରେ ପାଇବେ :-

ଗରିବ ଦେଶର ଧନୀ ଭଗବାନ

ହାଇଟେକ୍ ପୂଜା ପଦ୍ଧତି ଓ ଧନୀ ଭକ୍ତ

ଧାର୍ମିକ ମେଳା ଓ ପର୍ବ ବେଳେ ବିପଦ

ବାଲ୍ମୀକି ନାୟକ



# ଚମତ୍କାରର ରହସ୍ୟ

## (ହେତୁବାଦୀ ବିଚାର)

ବାଲ୍ମୀକି ନାୟକ

ଚମତ୍କାରର ରହସ୍ୟ CHAMATKARAR RAHASYA

ଲେଖକ :ବାଲ୍ମୀକି ନାୟକ Author :Balmiki Nayak

ପ୍ରକାଶିକା : ମମତା ନାୟକ Publiser:Mamata Nayak

ପ୍ରଚ୍ଛଦ ଶିଳ୍ପୀ : Cover Design :

ମୁକେଶ କୁମାର ସ୍ୱାଇଁ Mukesh Kumar Swain

ତୃତୀୟ ସଂସ୍କରଣ : Third Edition:

ନଭେମ୍ବର 2019 Navembar 2019



ଯୋଗାଯୋଗ :9482016260 Contact:9482016260

E -mail :- balmikinayak@gmail.com

ମୁଦ୍ରଣ : ଡଟ'ସ ପ୍ରିଣ୍ଟର ବେଙ୍ଗାଲୁରୁ Printer :

Dot's InovativePrinters, Bengaluru

ମୂଲ୍ୟ :ଟଙ୍କା 90/- Price :Rs.90/-

# ଉତ୍ସର୍ଗ

ମୋର ଆସ୍ତିକବାଦୀ ଜୀବନର ଶେଷ ପର୍ଯ୍ୟାୟ ଏବଂ ହେତୁବାଦୀ ଜୀବନର ପ୍ରାରମ୍ଭରେ ଜନ୍ମ ଗ୍ରହଣ କରିଥିବା ମାନସ ପୁତ୍ର ମିଥୁନ କୁମାର ତା' ଜୀବନରେ କୌଣସି ପ୍ରକାର ଐଶ୍ୱରୀୟ କୃପାକୁ ଅପେକ୍ଷା ନକରି ନିଜର ଦୃଢ଼ ଇଚ୍ଛା ଶକ୍ତି, କଠିନ ଅଧ୍ୟବସାୟ ଓ ନିସ୍ୱାର୍ଥ ଭାବେ କର୍ତ୍ତବ୍ୟ ପାଳନ କରି ଆଜି ଏକ ସଭ୍ୟ, ଶିକ୍ଷିତ ଓ ସଫଳ ନାଗରିକ ରୂପେ ନିଜକୁ ସମାଜରେ ପ୍ରତିଷ୍ଠିତ କରି ପାରିଛି । ତଥାକଥିତ ଭଗବାନ ଓ ଭାଗ୍ୟ ଉପରେ ଭରସା ନକରି ମଧ୍ୟ ଜଣେ ମଣିଷ, ଏକ ବୁଦ୍ଧିମାନ, ସଚ୍ଚୋଟ, ସତଚରିତ୍ର ଓ ସୁନାଗରିକ ହୋଇ ପାରିବ, ଏହାକୁ ସେ ପ୍ରତି ପଦକ୍ଷେପରେ ପ୍ରମାଣିତ କରିଥିବାରୁ, ଆମେ ପିତା ଓ ମାତା ଦୁହେଁ ଅଶେଷ ଗର୍ବ ଅନୁଭବ କରୁଛୁ । ମୋର ଏହି "ଚମତ୍କାରର ରହସ୍ୟ" ପୁସ୍ତକର ତୃତୀୟ ସଂସ୍କରଣକୁ ଏହି ପ୍ରଗତିଶୀଳ ତଥା ଉଦୀୟମାନ ଯୁବକ ହାତରେ ପୁଣି ଥରେ ଅର୍ପଣ କରି ନିଜକୁ ଧନ୍ୟ ମନେ କରୁଛି ।

ଲେଖକ

# ଅଭିଳାଷ

"ଚମତ୍କାରର ରହସ୍ୟ" ମୋର ତୃତୀୟ ସଂସ୍କରଣ । ଏହି ପୁସ୍ତକଟି ଆଗରୁ ଦୁଇଥର ପ୍ରକାଶ ପାଇ ପାଠକମାନଙ୍କ ଦ୍ୱାରା ଆଦୃତ ହୋଇଥିବାରୁ, ସେମାନଙ୍କ ସ୍ୱୀକୃତି ତଥା ପ୍ରୋତ୍ସାହନ ପାଇ ଏହାର ତୃତୀୟ ସଂସ୍କରଣ ପ୍ରକାଶ କରିବାକୁ ପ୍ରେରିତ ହୋଇଛି । ସେହି ମୁକ୍ତମନା ସୁଧୀ ପାଠକମାନଙ୍କୁ ମୁଁ ଗଭୀର ଶ୍ରଦ୍ଧା ଓ ସମ୍ମାନ ଜଣାଉଛି । ଇତି ମଧ୍ୟରେ ମୋର ଆହୁରି ସାତ ଖଣ୍ଡ ପ୍ରବନ୍ଧ ସଙ୍କଳନ ପ୍ରକାଶ ପାଇସାରିଛି । ପ୍ରତ୍ୟେକ ପୁସ୍ତକର ପ୍ରବନ୍ଧ ଗୁଡିକ ପାଠକମାନଙ୍କ ମନକୁ ଛୁଇଁ ପାରିଛି । ସ୍ଥିର ଜଳରେ ଟେକାଟିଏ ପଡିଲେ ଯେପରି ତରଙ୍ଗ ସୃଷ୍ଟି ହୋଇଥାଏ, ଠିକ ସେହିଭଳି ଯଥାସ୍ଥିତିବାଦକୁ ବିଶ୍ୱାସ କରୁଥିବା ଅନେକ ରୁଢିବାଦୀ ପାଠକମାନଙ୍କ ମନରେ ଏହି ପ୍ରବନ୍ଧ ଗୁଡିକ ଚହଳ ସୃଷ୍ଟି କରି ଦେଉଛି । ମୋର ଅନେକ ପାଠକ ଓ ପାଠିକା ମୁକ୍ତ କଣ୍ଠରେ କୁହନ୍ତି - "ହେତୁବାଦ ସତରେ ଏକ କ୍ରାନ୍ତିକାରୀ ବିଚାର । ବ୍ୟକ୍ତି ଓ ସମାଜ ପାଇଁ ହେତୁବାଦୀ ବିଚାରଧାରା ଅତି ଆବଶ୍ୟକ ।"

ମୋର ଏହି ପୁସ୍ତକରେ ସଙ୍କଳିତ ପ୍ରବନ୍ଧଗୁଡିକ ସମ୍ପର୍କରେ ଅଧିକ କିଛି କହିବା ଆବଶ୍ୟକ ମନେ କରୁନାହିଁ । ସୁଧୀ ପାଠକେ ପଢିଲେ ବୁଝି ପାରିବେ ଯେ ହେତୁବାଦର ଆବଶ୍ୟକତା କେତେ ଜରୁରୀ ? କାହାରି ଧାର୍ମିକ ବିଶ୍ୱାସକୁ ଆକ୍ଷେପ କରିବା କିମ୍ବା ଆଘାତ କରିବା ମୋର ଉଦ୍ଦେଶ୍ୟ ନୁହେଁ । ସାଧାରଣ ମଣିଷମାନଙ୍କ ମନରୁ ଭିତ୍ତିହୀନ ବିଶ୍ୱାସ ଓ ଅହେତୁକ ଭୟଗୁଡିକୁ ଦୂର କରି, ବୈଜ୍ଞାନିକ ଚିନ୍ତନ ଜାଗ୍ରତ କରିବା ହିଁ ମୋର ଅସଲ ଉଦ୍ଦେଶ୍ୟ । ପରିବର୍ତ୍ତନ ହିଁ ଏକ ପ୍ରାକୃତିକ ସତ୍ୟ । ପାଠକମାନେ ଯଦି ବୈଜ୍ଞାନିକଶୈଳୀରେ ଜୀବନ ଅତିବାହିତ କରିବା ପାଇଁ ନିଜକୁ ପରିବର୍ତ୍ତନ କରିପାରିବେ, ତେବେ ମୋର ଶ୍ରମ ସାର୍ଥକ ହେବ ବୋଲି ଆଶା କରୁଛି ।

ବାଲ୍ମୀକି ନାୟକ

# ସୂଚୀ ପତ୍ର

# ପ୍ରାଚୀନ ହିନ୍ଦୁ ସଂସ୍କୃତି କେତେ ମହାନ?

ଦୁନିଆରେ ପ୍ରତ୍ୟେକ ଯୁଗରେ ପ୍ରାଚୀନ ଓ ଆଧୁନିକ ସଂସ୍କୃତି ମଧ୍ୟରେ, ରହୁଥିବା ବୈଷମ୍ୟକୁ ନେଇ ବିବାଦ ଚାଲି ଆସିଛି । ଗତ ଏକହଜାର ବର୍ଷ ତଳର ଆଧୁନିକ ମଣିଷମାନେ, ଗତ ପାଞ୍ଚ ଶହ ବର୍ଷ ତଳର ମଣିଷମାନଙ୍କ ଦୃଷ୍ଟିରେ ପ୍ରାଚୀନ ବା ପୁରୁଣା ଥିଲେ । ସେହିଭଳି ଆଜିର ଆଧୁନିକ ମଣିଷ ପାଇଁ ଗତ ପାଞ୍ଚ ଶହ ବର୍ଷ ତଳର ମଣିଷମାନେ ମଧ୍ୟ ପୁରୁଣା ହୋଇ ପଡିଛନ୍ତି । ପ୍ରତ୍ୟେକ ପିଢ଼ି ଭିତରେ ମତପାର୍ଥକ୍ୟ ଓ ବିଚାର ବୈଷମ୍ୟ ରହୁଥିଲେ ମଧ୍ୟ ସବୁବେଳେ, ପୁରାତନପନ୍ଥୀ ବର୍ଗର ଲୋକମାନେ ଆଧୁନିକ ଜୀବନ ଶୈଳୀକୁ ସହଜରେ ଗ୍ରହଣକରି ପାରୁନଥିବା କାରଣରୁ, "ପ୍ରାଚୀନ ସଂସ୍କୃତି ମହାନ ଥିଲା, ଆଧୁନିକ ସମାଜ ଭଲ ନୁହେଁ" ବୋଲି ସମାଲୋଚନା କରି ଆସୁଛନ୍ତି । ସେମାନଙ୍କ ମତରେ"ପ୍ରାଚୀନ କାଳରେ ଗୋଟିଏ ସୁବର୍ଣ୍ଣ ଯୁଗ ଥିଲା" । ସୁବର୍ଣ୍ଣ ଯୁଗର ଅର୍ଥ, ସେ ଯୁଗରେ ମଣିଷମାନେ ଅତ୍ୟନ୍ତ ସୁଖ ଓ ଶାନ୍ତିରେ ଜୀବନ ଅତିବାହିତ କରୁଥିଲେ । ସେ ଯୁଗରେ କୁଆଡେ ସଦାଚାରୀ, ଆଧ୍ୟାତ୍ମିକ ପ୍ରବୃତ୍ତି ସମ୍ପନ୍ନ, ସତ୍ୟନିଷ୍ଠ ଓ ଦୟାବାନ ମଣିଷମାନେ ବାସ କରୁଥିଲେ । ଆଜିଭଳି ସେ ଯୁଗରେ ବେଇମାନ, ଭ୍ରଷ୍ଟାଚାରୀ, ଅନୈତିକ ଓ ଧର୍ମବିରୋଧୀ ଲୋକମାନେ ନଥିଲେ ବୋଲି କହୁଛନ୍ତି । ପ୍ରାଚୀନ ଯୁଗରେ ସମସ୍ତ ପ୍ରକାର ଉତ୍କୃଷ୍ଟ ଧରଣର ଉପକରଣ, ଅସ୍ତ୍ରଶସ୍ତ୍ର, ଯାନବାହାନ (ପଶୁ,ପକ୍ଷୀ) ଆଦି ଉପଲବ୍ଧ ଥିଲା ବୋଲି ଶାସ୍ତ୍ରମାନଙ୍କରୁ ପ୍ରମାଣ ଖୋଜି ଦର୍ଶାଉଛନ୍ତି ।

ଉପରୋକ୍ତ ସମସ୍ତ ବକ୍ତବ୍ୟ ଉପରେ ଗଭୀର ଭାବେ ଚିନ୍ତାକଲେ ବୁଝା ପଡୁଛି ଯେ ଅନେକ ବକ୍ତବ୍ୟ ଓ ତଥ୍ୟ ଅବୈଜ୍ଞାନିକ, ଅବିଶ୍ୱାସନୀୟ ମନଗଢା କାହାଣୀ ଉପରେ ଆଧାରିତ । କାଳ୍ପନିକ ଆଦର୍ଶବାଦ (**Utopia**) ବ୍ୟତୀତ ଅନ୍ୟ କିଛିନୁହେଁ । ଧର୍ମ ଶାସ୍ତ୍ରମାନଙ୍କରେ ହିଁ ଲେଖା ଯାଇଛି – "ସେ ଯୁଗରେ ମଧ୍ୟ ରୋଗ, ଶୋକ, ହିଂସା,
ଭ୍ରଷ୍ଟାଚାର, ଅତ୍ୟାଚାର, ଅନୀତି, ବ୍ୟଭିଚାର, ଶୋଷଣ ଇତ୍ୟାଦି ସମସ୍ତ ପ୍ରକାର ଦୁର୍ଗୁଣ ଥିଲା ।"

ସେଥିପାଇଁ ସେ ସମୟର ସାମାଜିକ, ରାଜନୈତିକ, ଅର୍ଥନୈତିକ, ଆଧ୍ୟାତ୍ମିକ ପ୍ରଭୃତି ବିଷୟକୁ ଆଧାର କରି ସୃଷ୍ଟି ହୋଇଥିବା ମହାଭାରତ କାବ୍ୟରେ କୌରବ ଓ ପାଣ୍ଡବ, ରାମାୟଣ କାବ୍ୟରେ ରାମ ଓ ରାବଣ, ହରିବଂଶ କାବ୍ୟରେ କୃଷ୍ଣ ଓ କଂସ ଚରିତ୍ର ମଧ୍ୟରେ ଭୀଷଣ ଯୁଦ୍ଧ ହୋଇଥିବା କଥା ଲେଖା ହୋଇଛି । ସେହି ଯୁଦ୍ଧ ସମୟରେ କେବଳ ଭାରତ

ଭୂଇଁରେ ଯେତେ ପରିମାଣରେ ନରସଂହାର ହୋଇଥିଲା ବୋଲି ଲେଖା ହୋଇଛି, ସେତିକି ଜନସଂଖ୍ୟା ତ ଆଜିର ପୃଥିବୀରେ ନାହାଁନ୍ତି । ମହାଭାରତ ଯୁଦ୍ଧ ବେଳେ କୁଆଡେ ସୈନିକମାନଙ୍କର ରକ୍ତର ନଦୀ ବୋହୁଥିଲା । ଆଜି ସଭିଏଁ ଜାଣନ୍ତି ଯେ ରକ୍ତ ଶରୀରରୁ ବାହାରି ଆସିଲେ ଜମାଟ ବାନ୍ଧିଯାଏ । ସେତେବେଳର ମଣିଷ ରକ୍ତ କ'ଣ ଜମାଟ ବାନ୍ଧୁ ନଥିଲା ? ଯାହା ବି ହେଉ ଏଇଠି ପ୍ରଶ୍ନ ଉଠୁଛି - ଏତେ ସଂଖ୍ୟାରେ ଯଦି ନରସଂହାର ହେଉଥିଲା, ତେବେ ଲୋକମାନେ ସୁଖ ଓ ଶାନ୍ତିରେ ରହୁଥିଲେ କେମିତି?

ଆମର ବ୍ୟକ୍ତିଗତ ଅନୁଭବରୁ ଆମେ ଜାଣିଛୁ ଯେ ଗତ 1962 ସାଲରେ ଚୀନ ଓ ଭାରତର ଲଢେଇ, ଦ୍ୱିତୀୟଥର 1965 ସାଲରେ ପାକିସ୍ଥାନ ସହ ଲଢେଇ ଏବଂ 1971 ସାଲରେ ପୂର୍ବ ପାକିସ୍ଥାନସହ ଲଢେଇ ସମୟରେ ଭାରତୀୟ ଜନଜୀବନ ଅସ୍ତବ୍ୟସ୍ତ ହୋଇ ଯାଇଥିଲା । ସମସ୍ତେ ଭୟ ଓ ଆଶଙ୍କା ଭିତରେ ଦିନ କାଟୁଥିଲେ ଏବଂ ତାଙ୍କ ପରିବାରର କେହି ସୈନିକ ବା ସୁରକ୍ଷା କର୍ମୀ ସହିଦ ନହେଉ, ସେଥିପାଇଁ ସୀମାବର୍ତ୍ତୀ ଅଞ୍ଚଳର ଅଧିବାସୀମାନେ ନିଦ୍ରାହୀନ ରାତି କଟାଉଥିଲେ । ସୁଖ ଓ ଶାନ୍ତି ଆସିବ କେଉଁଠୁ ?

ପ୍ରାଚୀନ ଅଧ୍ୟାତ୍ମିକ ସାହିତ୍ୟମାନଙ୍କର ଅଧିକାଂଶ ପୃଷ୍ଠାରେ ତଥାକଥିତ ଦେବ ଓ ଦାନବଙ୍କ ଭିତରେ ହୋଇଥିବା ସଂଘର୍ଷର କାହାଣୀ ସବୁ ଲିପିବଦ୍ଧ ହୋଇଛି । ତଥାପି ଆଧ୍ୟାତ୍ମିକ ଗୁରୁମାନେ ପ୍ରାଚୀନ ଯୁଗର ଗୁଣ ଗାଉଛନ୍ତି ।

ଆମ ଦେଶରେ ହଜାର ହଜାର ବର୍ଷ ତଳୁ ବେଦ ଶାସ୍ତ୍ରମାନଙ୍କୁ ପଢି, ବୁଝି ବ୍ୟାଖ୍ୟା କରୁଥିବା ଶାସ୍ତ୍ରବିଶାରଦ ଓ ବିଦ୍ୱାନମାନଙ୍କ ଭିତରୁ ଜଣେ ମଧ୍ୟ ମାନବ ଉପଯୋଗୀ ଗୋଟିଏ ବି ଆଧୁନିକ ଉପକରଣ ନିର୍ମାଣ କରିପାରିଲେ ନାହିଁ । ପାଶ୍ଚାତ୍ୟ ଦେଶର ବୈଜ୍ଞାନିକମାନଙ୍କ ଦ୍ୱାରା ଯେତେବେଳେ ଉଡ଼ାଜାହାଜ ତିଆରି କରିବା ଖବର ଆସିଲା, ଆମ ଦେଶର ବିଦ୍ୱାନମାନେ ଦାବି କଲେ - "ଆମ ଦେଶରେ ବହୁତ ଆଗରୁ ପୁଷ୍ପକ ବିମାନ ତିଆରି ହୋଇ ସାରିଛି ।" କେତେକ ଗାଲୁଆ ପ୍ରଚାର କଲେ -"ସେମାନେ ଆମ ଦେଶରୁ ବେଦକୁ ଚୋରେଇ ନେଇ ସେହି ପାଠରୁ ଉଡ଼ାଜାହାଜ ବନେଇବା କୌଶଳ ଶିଖି ପାରିଲେ ।" ଏଇଠି ପ୍ରଶ୍ନ ଉଠୁଛି - ଯଦି ବେଦରେ ଉଡ଼ାଜାହାଜ ତିଆରି କରିବାର ବୈଷୟିକ ଜ୍ଞାନ ଲେଖାଥିଲା, ତେବେ କେବଳ ଗୋଟିଏ ମାତ୍ର ପୁଷ୍ପକ ବିମାନ କାହିଁକି ଥିଲା ? ହଜାର ସଂଖ୍ୟାରେ ତିଆରି ନହେଲା କାହିଁକି?

ଦ୍ୱିତୀୟତଃ ବେଦର ଭାଷା ହେଉଛି ସଂସ୍କୃତ । ଯେଉଁ ଦେଶରେ ଉଡ଼ାଜାହାଜ ତିଆରିହେଲା, ସେ ଦେଶର ହୁଏତ ଜଣେ ମଧ୍ୟ ସଂସ୍କୃତ ଭାଷା ଜାଣି ନଥିବ । ତଥାପି ସେମାନେ ବେଦପଢ଼ି, ବୁଝି ଜ୍ଞାନହାସଲ କରିନେଲେ, ଅଥଚ ଆମର ସଂସ୍କୃତ ପଣ୍ଡିତମାନେ ପଛରେ ରହିଗଲେ କିପରି ?

ବିଜୁଳି ଶକ୍ତିର ଉଦ୍ଭାବନ ହେବା ପରେ, ସାରା ଦୁନିଆରେ ଏକ ଅଭୂତପୂର୍ବ କ୍ରାନ୍ତି ଆସିଲା । ଶବ୍ଦ ଓ ଚିତ୍ରକୁ ରେଡ଼ିଓ ତରଙ୍ଗ ସାହାଯ୍ୟରେ ଦୁନିଆର ଗୋଟିଏ କୋଣରୁ ଅନ୍ୟାନ୍ୟ ଜାଗା ପର୍ଯ୍ୟନ୍ତ ନିଖୁଣ ଭାବେ ପହଞ୍ଚାଇ ଦିଆ ଯାଇପାରିଲା । ଏହି ଉଦ୍ଭାବନ ମଧ୍ୟ ହେଲା ପାଶ୍ଚାତ୍ୟ ଦେଶରେ । ଆମ ଦେଶର ପଣ୍ଡିତମାନେ ପ୍ରଚାର କଲେ ଏହା କିଛି ନୂଆକଥା ନୁହେଁ । ମହାଭାରତଯୁଦ୍ଧ ସମୟରେ ମଧ୍ୟ ଏହି ଟେକନୋଲୋଜି ସାହାଯ୍ୟରେ ସଞ୍ଜୟ, ଯୁଦ୍ଧଭୂମିର ସମସ୍ତ ଦୃଶ୍ୟ ଦେଖି ପାରୁଥିଲେ ଏବଂ ଧୃତରାଷ୍ଟ୍ରଙ୍କୁ ଶୁଣାଇ ପାରୁଥିଲେ ।

**2012** ମସିହା ଜୁଲାଇ ମାସରେ **Geneva - Swis Border** ରେ **CERN** ଦ୍ୱାରା ବିଖ୍ୟାତ ବୈଜ୍ଞାନିକ **Stephen Hawking**ଙ୍କ ସହଯୋଗରେ ହୋଇଥିବା ବୈଜ୍ଞାନିକ ପରୀକ୍ଷଣ **"Higgs Boson Particle"**କୁ କହିଲେ, ତାହା **"God particle"** ଆମର ବ୍ରହ୍ମ ହିଁ ହେଉଛି ସେହି "ଈଶ୍ୱର କଣିକା" । ବୈଜ୍ଞାନିକମାନେ ଏତେ ପରିଶ୍ରମକରି ଅଧିକ ଆଉ କ'ଣ ପାଇଲେ?

ଅନ୍ୟ ଦେଶର ଯବନ ସୈନିକମାନେ ଯେଉଁ ମାରଣାସ୍ତ୍ର ବ୍ୟବହାର କରି ଆମ ଦେଶକୁ, ପ୍ରାୟ ଦୁଇହଜାର ବର୍ଷ ପର୍ଯ୍ୟନ୍ତ ଗୋଲାମ ବନେଇ ରଖିଥିଲେ, ଆମ ଦେଶରେ ଯଦି ପୁରାଣ ବର୍ଣ୍ଣିତ ତଥାକଥିତ ଶବ୍ଦଭେଦୀ ବାଣ, ଆଗ୍ନେୟାସ୍ତ୍ର, ଇନ୍ଦ୍ରଙ୍କ ବଜ୍ର ଓ ବ୍ରହ୍ମାସ୍ତ୍ର ଆଦି ତିଆରି ହୋଇ ବ୍ୟବହାର କରାଯାଇଥାନ୍ତା, ତେବେ ଆମକୁ କିଏ ବା ଜିତି ପାରିଥାନ୍ତା?

ଆରମ୍ଭରୁ ଆମକୁ କେବଳ କାଳ୍ପନିକ ଶକ୍ତିମାନଙ୍କର ଛାତ୍ରଛାୟା ତଳେ ହାତ ଯୋଡି ବସି, ମାନସିକ ଶାନ୍ତି ପାଉଥିବା ଭଳି ଆତ୍ମପ୍ରବଞ୍ଚନା କରିବାକୁ ଶିକ୍ଷା ଦିଆଯାଉଛି । ସଂସାରରେ ଯାହା ନାହିଁ, ତାହା ଅଛି ଏବଂ ଯାହା ଅଛି, ତାହା ମାୟା ବୋଲି ମାନିବାକୁ ବାଧ୍ୟ କରାଯାଉଛି । ହଜାର ହଜାର ବର୍ଷର ଗୋଲାମ ଜୀବନରୁ ମୁକ୍ତ ହୋଇ ମଧ୍ୟ ଆମେ ମାନସିକ ଦାସତ୍ୱରୁ ମୁକ୍ତହୋଇ ପାରିନାହୁଁ । ଦେଶ ଓ ସମାଜର ଉନ୍ନତି ନହେବାର ମୁଖ୍ୟ କାରଣ ହେଉଛି - କାଳ୍ପନିକ ଶକ୍ତିମାନଙ୍କ ପ୍ରତି ରହିଥିବା ଅହେତୁକ ଶ୍ରଦ୍ଧା । ପ୍ରାଚୀନ ସଂସ୍କୃତିର ଦୋହାଇ ଦେଇ ଅତୀତର ମୋହ ତ୍ୟାଗ କରିବାକୁ ପ୍ରସ୍ତୁତ ହେଉନଥିବା ଆଧ୍ୟାତ୍ମିକ ଗୁରୁମାନେ, ଜନତାଙ୍କୁ

ଭ୍ରମିତକରି ଦିଗହରା କରି ଆସିଛନ୍ତି । ଭ୍ରମିତ ଜନତା ଦ୍ୱନ୍ଦ୍ୱରେ ପଡି ବୁଝି ପାରୁନାହାନ୍ତି, କେଉଁ ଦିଗରେ ଚାଲିଲେ ପ୍ରକୃତରେ ଉନ୍ନତିର ଶିଖରରେ ପହଞ୍ଚିବେ ?

ଆଧ୍ୟାତ୍ମିକ ଗୁରୁମାନଙ୍କର ମତ ହେଉଛି - କେବଳ ରାଜତନ୍ତ୍ର ହିଁ ସମାଜକୁ ସଫଳ ଶାସନ ପ୍ରଦାନ କରି ପାରିବ । କାରଣ ଏହା ହିଁ ବେଦ ସମ୍ମତ ପଦ୍ଧତି । ଅସଲ କଥା ହେଉଛି – "ପ୍ରତ୍ୟେକ ବଳବାନ କ୍ଷତ୍ରିୟ ରାଜା ନିଜର ରାଜଦରବାରରେ ରାଜନୀତି, ଆଧ୍ୟାତ୍ମିକତା ଓ ଶାସନ ସମ୍ପର୍କରେ ଚର୍ଚ୍ଚା କରିବା ପାଇଁ ବ୍ରାହ୍ମଣ ବର୍ଗର ପଣ୍ଡିତମାନଙ୍କୁ ହିଁ ସ୍ଥାୟୀ ନିଯୁକ୍ତି ଦେଉଥିଲେ । ପରୋକ୍ଷରେ ଦେଶକୁ ଶାସନ କରୁଥିଲେ ପୁରୋହିତ ବର୍ଗ । ଏହି ପ୍ରତିକ୍ରିୟାବାଦୀ, ଏବଂ ପ୍ରଗତି ବିରୋଧୀ ଶକ୍ତିର ସମର୍ଥକମାନେ ପ୍ରାଚୀନ ସଂସ୍କୃତି ପ୍ରତି ଜନତାଙ୍କ ମୋହ ବା ଦୁର୍ବଳତାରୁ ନିଜର ଫାଇଦା ପାଉଥିଲେ ।" ସେମାନଙ୍କର ପ୍ରୟାସ ଆଜି ବି ଚାଲୁ ରହିଛି । ଆଜି ଦେଶରେ ମୁଦ୍ରାସ୍ଫିତି, ଖାଦ୍ୟାନ୍ନର ଅଭାବ, ଅଶିକ୍ଷା, ସ୍ୱାସ୍ଥ୍ୟ ସମସ୍ୟା, ଧନୀ ଗରିବଙ୍କ ଭିତରେ ଅଧିକ ତାରତମ୍ୟ, ଭ୍ରଷ୍ଟାଚାର ଆଦି ସମସ୍ୟା ଯୋଗୁଁ ମଣିଷ ଜୀବନ ଓ ମୃତ୍ୟୁ ଭିତରେ ତ୍ରିଶଙ୍କୁ ପାଲଟି ଯାଉଥିବା ବେଳେ, କେତେକ ଗାଲୁଆ ନେତା ଡାକ ଛାଡୁଛନ୍ତି - "ମଠ, ମନ୍ଦିର ନିର୍ମାଣ ହେଉ, ପିଲାମାନଙ୍କୁ ଆଧ୍ୟାତ୍ମିକ ଶିକ୍ଷା ଦିଆଯାଉ ।"

କେତେକ ପଣ୍ଡିତ କହୁଛନ୍ତି -"ରାଷ୍ଟ୍ରଭାଷାରେ ଇଁରାଜୀ ଶବ୍ଦ ଗୁଡିକ ବଦଳରେ, ସଂସ୍କୃତ ଭାଷାର ଶବ୍ଦ ବ୍ୟବହାର କରାଯାଉ ।" ଇଁରାଜୀ ଭାଷା ପ୍ରତି ଘୃଣା କରି ଯଦି ରାଷ୍ଟ୍ର ଏବଂ ପ୍ରାଦେଶିକ ଭାଷାରେ ସଂସ୍କୃତ ଶବ୍ଦ ବ୍ୟବହାର କରାଯିବ, ତେବେ ଅନୁବାଦିତ ଶବ୍ଦର ଅର୍ଥ ମୂଳ ଇଁରାଜୀ ଶବ୍ଦର ଅର୍ଥ ସହିତ ସମ୍ପୂର୍ଣ୍ଣ ମିଶି ନପାରେ । ଦ୍ୱିତୀୟତଃ କ୍ଲିଷ୍ଟ ସଂସ୍କୃତ ଶବ୍ଦକୁ ମନେ ରଖିବା ଓ ବ୍ୟବହାର କରିବା ସହଜ ହେବନାହିଁ । ଯଥା : 'ମୋଟର' ପାଇଁ 'ବହ୍ନିତ୍ରଭାଣ', ୱାରେଣ୍ଟ ପାଇଁ 'ପ୍ରାହ୍ୱାନପତ୍ର' , ଟ୍ରେନ ପାଇଁ ବାଷ୍ପୀୟ ଶକଟ, ଇତ୍ୟାଦି । ତୃତୀୟତଃ ସାରା ଦୁନିଆରେ ବୈଷୟିକ ଜ୍ଞାନ, ବୈଜ୍ଞାନିକ ତଥ୍ୟ, ପ୍ରଯୁକ୍ତି ବିଦ୍ୟା, ସାମାଜିକ ଦର୍ଶନ ସବୁ ଇଁରାଜୀ ଭଳି ଏକ ସରଳ ଭାଷାରେ ପ୍ରକାଶିତ ହେଉଥିବାରୁ ବିଦ୍ୟାର୍ଥୀମାନେ ଖୁବ ଶୀଘ୍ର ବହୁ ମାତ୍ରାରେ ଜ୍ଞାନ ହାସଲ କରି ପାରୁଛନ୍ତି । ତେଣୁ ସଂସ୍କୃତ ଶବ୍ଦ ବ୍ୟବହାର କଲେ ଆମ ଦେଶ ଆଗରେ ନୁହେଁ ପଛରେ ପଡି ରହିବ ।

କେତେକ ଧର୍ମଗୁରୁ ଭାରତୀୟ ପୋଷାକ ସପକ୍ଷରେ ଭାଷଣ ଦେଉଥାନ୍ତି । ଧୋତି ଓ କୁର୍ତ୍ତା ହେଉଛି ଆମର ଜାତୀୟ ପୋଷାକ । ଇଁରେଜମାନଙ୍କ ଦ୍ୱାରା ଅଣା ଯାଇଥିବା ପ୍ୟାଣ୍ଟ,

ସାର୍ଟ, କୋଟ ଇତ୍ୟାଦି ତ୍ୟାଗ କରି ଧୋତି ଓ କୁର୍ତ୍ତା ପିନ୍ଧିବା ଉଚିତ ବୋଲି ଯୁକ୍ତି କରିଥାନ୍ତି । ଆମେ ବୁଝି ପାରୁନାହୁଁ ଯେ, ପୋଷାକ ବଦଳେଇଲେ ଆମର ଉନ୍ନତି ହେବ ନା ଅବନତି ହେବ? ପ୍ରଥମେ ଦେଖିବା - ପ୍ୟାଣ୍ଟ, ସାର୍ଟ, କୋଟ ଆଦି ପିନ୍ଧିବା ଯେତେ ସହଜ ଓ ସୁବିଧା, ଧୋତି ପିନ୍ଧିଲେ ସେତେ ସୁବିଧା ହୁଏନାହିଁ । ଏଇଠି ଆଉ ଗୋଟିଏ କଥା ଦେଖିବା - ପୁରୁଷମାନଙ୍କ ଡ୍ରେସ କଥା ତ ଠିକ ଅଛି କିନ୍ତୁ ଯଦି ସ୍ତ୍ରୀମାନଙ୍କର ମଧ୍ୟ ପ୍ରାଚୀନ କାଳର ଡ୍ରେସ ପିନ୍ଧିବାକୁ କୁହାଯିବ ତେବେ ସେମାନେ ଚଡି, ସାୟା, ବ୍ରେସିୟାର, ବ୍ଲାଉଜ ଭଳି କୌଣସି ଅନ୍ତର୍ବସ୍ତ୍ର ପିନ୍ଧି ପାରିବେ ନାହିଁ । କାରଣ ଭାରତୀୟ ସ୍ତ୍ରୀମାନଙ୍କୁ ସାୟା ଓ ବ୍ଲାଉଜ ପିନ୍ଧିବା ଇଂରେଜମାନେ ହିଁ ଶିଖାଇ ଥିଲେ ।

ପ୍ରାଚୀନ ହିନ୍ଦୁ ସଂସ୍କୃତିକୁ ବଞ୍ଚାଇ ରଖିବାପାଇଁ ଧାର୍ମିକ ନେତା ଓ ସଙ୍ଗଠନମାନେ ବିଜ୍ଞାନ ଦ୍ୱାରା ଉଦ୍ଭାବନ କରାଯାଇଥିବା ଡ଼ାକବାଜି ଯନ୍ତ୍ରକୁ ଖୁବ ବେଶୀ ବ୍ୟବହାର କରୁଛନ୍ତି । ପ୍ରତ୍ୟେକ ଭାଷାରେ ଭକ୍ତମାନଙ୍କୁ ପ୍ରଭାବିତ କରିବାପାଇଁ ଟିଭି ଚ୍ୟାନେଲ ଗୁଡିକୁ ଅନୁବନ୍ଧିତ କର ନେଇଛନ୍ତି । ସେଥିରେ କେବଳ ଆଧ୍ୟାତ୍ମିକତା ଓ ତଥାକଥିତ ଈଶ୍ୱର, ସ୍ୱର୍ଗ, ମୋକ୍ଷ, ଆତ୍ମା, ପରମାତ୍ମା ଓ ପୁନର୍ଜନ୍ମ ସମ୍ପର୍କରେ ଦିନରାତି ଚର୍ଚ୍ଚା ହେଉଛି । ମାନିଲେ କ'ଣ ସବୁ ଫାଇଦା ହେବ , ନମାନିଲେ କ'ଣ ସବୁ କ୍ଷତି ହେବ ଅତିରଂଜିତ କରି ବର୍ଣ୍ଣନା କରା ଯାଇଥାଏ । ବର୍ଣ୍ଣନା କରା ଯାଉଥିବା ତଥ୍ୟ ବା କାହାଣୀରେ କେତେ ସତ୍ୟତା ରହିଛି, କେହି ବିଚାର କରନ୍ତି ନାହିଁ । ତାହା ଯେହେତୁ ଟିଭି ଭଳି ଗଣମାଧ୍ୟମରେ ପ୍ରଚାର ହେଉଛି, ତେଣୁ ସନ୍ଦେହର ଅବକାଶ ନଥାଏ । ଦର୍ଶକମାନଙ୍କର କିଛି ଫାଇଦା ହେଉ କି ନହେଉ ଆଧ୍ୟାତ୍ମିକ ଗୁରୁ ଓ ଚ୍ୟାନେଲ ମାଲିକଙ୍କ କୋଟି କୋଟି ଟଙ୍କା ଫାଇଦା ହେଉଛି ।

କେତେକ ମନ୍ତ୍ରୀ ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମରେ ଆଧାରହୀନ, ଅବୈଜ୍ଞାନିକ ଜ୍ୟୋତିଷଶାସ୍ତ୍ରକୁ ସାମିଲ କରି ସାରିଲେଣି । କର୍ଣାଟକ ପ୍ରଦେଶର ଶିକ୍ଷାମନ୍ତ୍ରୀ ସ୍ପିରିଚୁଆଲ ୟୁନିଭର୍ସିଟି ଗଠନ କରି ସେଥିରେ ବେଦ, ଉପନିଷଦ, ଗୀତା, ଭାଗବତ, ଅଷ୍ଟାଦଶ ପୁରାଣ, ରାମାୟଣ, ମହାଭାରତ ଓ ଜ୍ୟୋତିଷଶାସ୍ତ୍ର ସମ୍ପର୍କରେ ଶିକ୍ଷା ଦେବାକୁ ପ୍ରସ୍ତାବ ପାରିତ କରି ସାରିଲେଣି । ଏହା ଦ୍ୱାରା ଭାରତୀୟ ବିଦ୍ୟାର୍ଥୀମାନଙ୍କ ଶିକ୍ଷା ସ୍ତର କେଉଁଆଡକୁ ଗତି କରିବ କହିବା ଅନାବଶ୍ୟକ । ଏହି ବିଶ୍ୱବିଦ୍ୟାଳୟର ବିଦ୍ୟାର୍ଥୀମାନେ ରେକୀ, ବାସ୍ତୁଶାସ୍ତ୍ର, ଫେଙ୍ଗସୁଇ, ମାରସିଆଲ ଆର୍ଟ, ସ୍ପିରିଚୁଆଲ ହିଲିଙ୍ଗ, ଜେମସ, କ୍ରିଷ୍ଟାଲ, ଜ୍ୟୋତିଷଶାସ୍ତ୍ର, ମ୍ୟୁଜିକ ଥେରାପି,

ମେଡ଼ିଟେସନ, ଯୋଗ, ନ୍ୟୁରୋଲୋଜି, ମେଡିସନାଲ ପ୍ଲାଣ୍ଟ, ଯନ୍ତ୍ର, ତନ୍ତ୍ର ଓ ମନ୍ତ୍ର ଉପରେ ରିସର୍ଚ୍ଚ କରିବେ । ବିଦ୍ୟାର୍ଥୀମାନଙ୍କୁ ଡିପ୍ଲୋମା, ଡିଗ୍ରୀ ପ୍ରମାଣ ପତ୍ର ପ୍ରଦାନ କରାଯିବ । ବିଶ୍ୱବିଦ୍ୟାଳୟର ନାମ - " **Amrutha Sinchan Spiritual Private University**" ହେବ । (**TOI Dec,2012**,ପ୍ରଥମ ପୃଷ୍ଠାର ଖବର ଦ୍ରଷ୍ଟବ୍ୟ)

କର୍ଣ୍ଣାଟକର ପ୍ରସିଦ୍ଧ "କ୍ୟୁକେ ସୁବ୍ରମନ୍ୟ ମନ୍ଦିର" ରେ ପ୍ରତିବର୍ଷ ବ୍ରାହ୍ମଣମାନଙ୍କ ଅଇଁଠା କଦଳୀପତ୍ର ଉପରେ ଖାଲି ଦେହରେ ଗଡିଗଡି ଗଲେ ପୂଣ୍ୟ ହୁଏ ଏବଂ ଦେହର ଚର୍ମ ରୋଗ ଭଲ ହୋଇଯାଏ ବୋଲି, ଶହ ଶହ ସ୍ତ୍ରୀ ଓ ପୁରୁଷ ମାର୍ଗଶିର ମାସରେ, ପଡୁଥିବା 'ଚମ୍ପାଶାସ୍ତି' ତିନିଦିନ ପାଇଁ 'ମଦେସ୍ନାନ' ପାଳନ କରୁଛନ୍ତି । କିଛି ବୁଦ୍ଧିଜୀବୀମାନଙ୍କ ପ୍ରତିବାଦ ମୂଳକ ପଦକ୍ଷେପ ଯୋଗୁଁ କର୍ଣ୍ଣାଟକର ଉଚ୍ଚନ୍ୟାୟାଳୟ 'ମଦେସ୍ନାନ' ଅସଙ୍ଗତ ଓ ଅମାନବୀୟ କହି ପ୍ରତିବନ୍ଧ ଲଗାଇଥିଲେ । ଏହା ପରେ 'ମଦେସ୍ନାନ' ଭକ୍ତମାନଙ୍କର ସଂଖ୍ୟା କମି ଯାଇଛି । କାରଣ "କର୍ଣ୍ଣାଟକ ରାଜ୍ୟ ହିନ୍ଦୁଲିଦା ଜାଗ୍ରତ ବାଦିକେ" ସଙ୍ଗଠନର ସଭାପତି କେ.ଏସ. ଶିବରାମୁ ଲୋକମାନଙ୍କୁ ବୁଝାଇଥିଲେ ଯେ 'ମଦେ ସ୍ନାନ' ହେଉଛି ଏକ ଜାତିଭେଦର ପ୍ରତୀକ । (**Social discrimination**) ଏହାଦ୍ୱାରା କାହାରି କିଛି ଫାଇଦା ହୁଏନାହିଁ । ଏହା କେବଳ ଏକ ଭିତିହୀନ ବିଶ୍ୱାସ ।

ଆଜି ବି ଅନେକ ମଠ ଓ ମନ୍ଦିରମାନଙ୍କରେ ଦେବଦାସୀ ପ୍ରଥା ପ୍ରଚଳିତ ଅଛି । ହୁଏତ ଦେବଦାସୀର ସଂଜ୍ଞା ବଦଳି ଯାଇ କେବଳ ଶିଷ୍ୟା ହୋଇଛି । ମନ୍ଦିରର ପୂଜାରୀ ଓ ମଠର ଅଧିକାରୀମାନଙ୍କ ଦ୍ୱାରା ଏହି ମହିଳା ଶିଷ୍ୟାମାନଙ୍କର ଯୌନ କେଳେଙ୍କାରୀ ଘଟଣା ସମୟ ସମୟରେ ସାର୍ବଜନିକ ହେଉଛି । ଦୋଷୀମାନେ ଧରା ପଡୁଛନ୍ତି କିନ୍ତୁ ଅନ୍ଧଶ୍ରଦ୍ଧା ରଖୁଥିବା ଭକ୍ତମାନେ ସେମାନଙ୍କୁ ନିର୍ଦ୍ଦୋଷ ବୋଲି କହିବାକୁ ଟିକିଏ ବି ଲଜ୍ଜା ଅନୁଭବ କରୁନାହାନ୍ତି । ପ୍ରମାଣ ଅଭାବରୁ ଦୋଷୀମାନେ ଖଲାସ ହୋଇ ପୁଣି ନିଜ ଗାଦି ସମ୍ଭାଳି ବସନ୍ତି ।

ପ୍ରାଚୀନ ମନ୍ଦିରମାନଙ୍କର ସୁରା (ମଦ) ଓ ଗଞ୍ଜେଇ ସେବନର ପ୍ରଥାକୁ ଶାସ୍ତ୍ର ସମ୍ମତ କହି ସାଧୁ, ସନ୍ୟାସୀମାନେ ଭକ୍ତମାନଙ୍କୁ ପ୍ରୋତ୍ସାହିତ କରିଥାନ୍ତି । ଅନେକ ମଠ ଓ ମନ୍ଦିରରୁ ପ୍ରତିବର୍ଷ ବିଭିନ୍ନ ପ୍ରକାର ନିଶା ଦ୍ରବ୍ୟ ଓ ଡ୍ରଗସ ପୋଲିସ ଦ୍ୱାରା ଜବତ ହେଉଛି । ଏହି ବିଷୟରେ କିଛି ଦିନ ଖବର ପ୍ରକାଶ ପାଏ, ହୋ ହାଲ୍ଲା ମଧ୍ୟ ହୁଏ, ତା'ପରେ ସବୁକିଛି ଶାନ୍ତ ହୋଇଯାଏ । ମଠ ଓ ମନ୍ଦିରରେ ଯଥାବିଧି ନିଶା କାରୋବାର ଚାଲିଥାଏ । ଧର୍ମଶାସ୍ତ୍ରମାନଙ୍କରେ

ବଳିପ୍ରଥା ମଧ୍ୟ ଉଲ୍ଲେଖ ଅଛି । ପଶୁ, ପକ୍ଷୀମାନଙ୍କୁ ତଥାକଥିତ ଦେବୀଙ୍କ ଆଗରେ ବଳି ନାମରେ ହତ୍ୟା କରି, ନିଜପାଇଁ ସୁଖ, ସମୃଦ୍ଧି ହାସଲ କରିବାର ଅହେତୁକ ଶ୍ରଦ୍ଧାକୁ ତ୍ୟାଗ କରିବାପାଇଁ ଯେତେ ଢଙ୍ଗରେ ତର୍କ ଦେଇ ବୁଝେଇଲେ ମଧ୍ୟ କେହି ବୁଝିବାକୁ ଚାହାଁନ୍ତି ନାହିଁ । ମନ୍ତ୍ର ସାଧନା କରି ଦେବୀ କିମ୍ବା ଆତ୍ମାକୁ ନିଜ ସପକ୍ଷରେ ମନେଇବାପାଇଁ କେତେକ ତାନ୍ତ୍ରିକ ମଣିଷଙ୍କୁ ମଧ୍ୟ ବଳି ଦେଇଥାନ୍ତି । ଧରା ପଡିଲେ, ଏମାନଙ୍କୁ କୌଣସି ଦେବୀ ବା ଆତ୍ମା ରକ୍ଷା କରନ୍ତି ନାହିଁ । ଆଇନ କାନୁନ ଅନୁସାରେ ବନ୍ଧା ହୋଇ ଜେଲକୁ ଯାଆନ୍ତି ।

ଭାରତରେ ମଣିଷମାନଙ୍କ ଭିତରେ ଛୁଆଁ ଅଛୁଆଁ ପରମ୍ପରା ମଧ୍ୟ ଶାସ୍ତ୍ର ସମ୍ମତ ବୋଲି ହିନ୍ଦୁ ସଂସ୍କୃତିରେ ଅତି ନିଷ୍ଠୁର ଭାବେ ଆଜି ମଧ୍ୟ ପାଳନ କରାଯାଉଛି । ଶୋଷଣର ଶିକାର ହେଉଥିବା ନିମ୍ନ ଜାତିର ଜନତାଙ୍କୁ ନେଇ ସମସ୍ତେ ଖେଳ ଖେଳୁଛନ୍ତି । ନେତାମାନେ ଭୋଟପାଇଁ ନାନା ପ୍ରକାର ପ୍ରଲୋଭନ ଦେଖାଇ ସେମାନଙ୍କୁ ବ୍ୟବହାର କରୁଛନ୍ତି । ଉଚ୍ଚଜାତିର ଲୋକମାନେ ପୂର୍ବଜନ୍ମର କର୍ମଫଳ ଭୋଗ କରିବାକୁ ବାଧ୍ୟ କହି ଶୋଷଣ କରୁଛନ୍ତି । ଅଗତ୍ୟା ଦଳିତସମାଜ ତଥାକଥିତ ଭାଗ୍ୟ ଓ ଭଗବାନଙ୍କ ଭରସାରେ ହିଁ ବଞ୍ଚି ରହିବାକୁ ବାଧ୍ୟ ହୋଇଥାନ୍ତି ।

ଆଜିର ଯୁଗରେ ବାସ କରୁଥିବା କୌଣସି ବ୍ୟକ୍ତି ଶହେ ବର୍ଷ ପୂର୍ବର ସାମାଜିକ ସ୍ଥିତିକୁ ଫେରିଯିବା ଅସମ୍ଭବ । ସାଧୁ, ସନ୍ୟାସୀମାନେ ମଧ୍ୟ ପଦଯାତ୍ରା ତ୍ୟାଗ କରି ବିଜ୍ଞାନ ପ୍ରଦତ୍ତ ଯାନବାହାନ ବ୍ୟବହାର କରୁଛନ୍ତି । ସେମାନଙ୍କର ବାସସ୍ଥାନ, ଖାଦ୍ୟ, ପାନୀୟ ଓ ବସ୍ତ୍ର ଆଦି କୌଣସି ଧନୀ ବ୍ୟକ୍ତିଙ୍କ ଠାରୁ କମ ନୁହେଁ । ପ୍ରବଚନ ଦେଲାବେଳେ ସିନା ସେଇମାନେ କୁହନ୍ତି - "ଧନ,ସମ୍ପତ୍ତି ସବୁ ମାୟା । ମାୟାକୁ ତ୍ୟାଗ କରି ସତ୍ୟ ବ୍ରହ୍ମକୁ ଗ୍ରହଣ କର ।"

ଏଇଠି ଆମେ ସ୍ପଷ୍ଟ କରିଦେବାକୁ ଚାହୁଁଛୁ କି, ପ୍ରାଚୀନ କାଳର ଅନେକ ପ୍ରଥା ଓ ମାନ୍ୟତା ଆଜି ବି ଆମର ଗ୍ରହଣୀୟ । ଧର୍ମଗ୍ରନ୍ଥମାନଙ୍କରେ ଅନେକ ମାନବ ଉପଯୋଗୀ ତଥ୍ୟ ବି ରହିଛି । ନିଜର ତର୍କ ବୁଦ୍ଧିରେ ପରୀକ୍ଷା କରି ଦେଖିନିଅ । ସେହିଭଳି ପଶ୍ଚିମ ଦେଶର ଲୋକମାନେ ବ୍ୟବହାର କରୁଥିବା ସମସ୍ତ ବସ୍ତୁ ଆମ ପାଇଁ ଠିକ ନ ହୋଇପାରେ । ଆଧୁନିକତା ନାମରେ ସମସ୍ତ ପ୍ରକାର ପଶ୍ଚିମ ସଭ୍ୟତାକୁ ମାନିବା ଆମ ପାଇଁ କ୍ଷତିକାରକ ହୋଇପାରେ । ତେଣୁ ପ୍ରତ୍ୟେକ ଯୁଗର ପ୍ରତ୍ୟେକ କାମରେ ତାଳମେଳ ରହିବା ଅତ୍ୟନ୍ତ ଜରୁରୀ । ସେଥିପାଇଁ ମଣିଷର ବୁଦ୍ଧି ଖର୍ଚ୍ଚ ହେବା ଆବଶ୍ୟକ ।

*****~*****

# ଗୋଲାମୀ ଭିତ୍ତିଭୂମିର ଅପ୍ରିୟ ସତ୍ୟ

ପ୍ରତ୍ୟେକ ଭାରତୀୟ ବୁଦ୍ଧିଜୀବୀଙ୍କ ମନରେ ଗୋଟିଏ ମୌଳିକ ପ୍ରଶ୍ନ ରହିଛି - ଭାରତୀୟ ହିନ୍ଦୁ (?) ସମାଜ, ପ୍ରକୃତରେ ଭାରତୀୟ ମୂଳନୀବାସୀ, ପ୍ରାୟ ଦୁଇ ହଜାର ବର୍ଷ ଧରି ବିଦେଶୀ ଶାସକମାନଙ୍କ ପାଖରେ ଗୋଲାମ ଥିଲା କାହିଁକି?

ମୂଳନୀବାସୀମାନେ ବୁଦ୍ଧି ଓ ବାହୁବଳରେ ସଂସାରର କୌଣସି ଜାତିଠାରୁ କମ ନୁହନ୍ତି । ନିଜକୁ ହିନ୍ଦୁ ବୋଲାଉଥିବା ଭାରତୀୟମାନେ ନିଜର ମିଥ୍ୟା ପ୍ରଶଂସା କରିବାକୁ ଯାଇ ନିଜକୁ ଜଗଟଗୁରୁ କହି ବଡେଇ କରିପାରନ୍ତି । କିନ୍ତୁ ଅନ୍ୟମାନଙ୍କୁ ବୋକା ତ ବନେଇ ହେବନାହିଁ । ବିଦେଶୀମାନେ ଦେଖୁଛନ୍ତି, ଯେ ହିନ୍ଦୁମାନେ ପ୍ରାୟ ଦୁଇ ହଜାର ବର୍ଷ ଧରି ଗୋଲାମ ଥିଲେ । ଯେଉଁ ଧର୍ମର ଲୋକମାନେ ଓ ସମାଜ ଏତେ ଦିନ ଧରି ଗୋଲାମୀ ସହି ପାରନ୍ତି, ସେମାନଙ୍କର ମହାନତାର ମୂଲ୍ୟ ରହିଲା କେଉଁଠି ? ଗତ ଦୁଇ ହଜାର ବର୍ଷ ଧରି ଆମେ କେବଳ ପତନ ଓ ଶୋଷଣ ହିଁ ଦେଖିଛୁ । ବିଦେଶରୁ ଆସୁଥିବା ୟୁନାନୀ, ଶକ, ହୁଣ, ତୁର୍କ, ମୋଗଲ, ଫରାସୀ,ଇଂରେଜ ଇତ୍ୟାଦି ଅନେକ ବିଦେଶୀ ଆମକୁ ଲୁଣ୍ଠନ ଓ ଅତ୍ୟାଚାର କରି ଶାସନ କରିଗଲେ । ଅଥଚ ଆମେ କିଛି ବି କରି ପାରିଲୁନାହିଁ । ପ୍ରାୟ ଦୁଇ ହଜାର ବର୍ଷ ପରେ ଆମ ଦେଶ ସ୍ୱାଧୀନ ହେଲା । ଆମେ ସ୍ୱାଧୀନତା ପାଇବାର ଅସଲ କାରଣ ହେଉଛି - ଦୁନିଆର ପରିବର୍ତ୍ତିତ ନୂଆ ରାଜନୈତିକ ପରିସ୍ଥିତି ଯୋଗୁ ସମ୍ଭବ ହେଲା । ଆମର ବାହୁବଳ କିମ୍ବା ତ୍ୟାଗ ଦ୍ୱାରା ସମ୍ଭବ ହୋଇନଥିଲା । ତଥାପି ଦେଶକୁ ଦୁଇ ଭାଗରେ ବାଣ୍ଟିବା ପରେ ହିଁ ସ୍ୱାଧୀନତା ମିଳିଛି । ଏବେ 72 ବର୍ଷର ସ୍ୱତନ୍ତ୍ରତା ପ୍ରାପ୍ତି ପରେ ବି ଆମେ ସେହିସବୁ ଦେଶମାନଙ୍କୁ ସାହାଯ୍ୟ ମାଗୁଛୁ, ଯେଉଁମାନେ ଶହଶହ ବର୍ଷଧରି ଆମକୁ ଗୋଲାମ ବନେଇ ରଖିଥିଲେ । ଆମର ଆର୍ଥିକ ସ୍ୱାଧୀନତା ଏବେ ବି ନାହିଁ । ସ୍ୱାଧୀନତା ପ୍ରାପ୍ତି ପରର କାହାଣୀ ତ ଆହୁରି ଭୟାବହ । ଦେଶର ପ୍ରତିଟି ରାଜ୍ୟରେ ଭ୍ରଷ୍ଟାଚାର, ଭେଦଭାବ, ବେଇମାନୀ ଖୁବ ଭୟଙ୍କର ଭାବେ ଚାଲିଛି । ସଚ୍ଚୋଟ, କର୍ତ୍ତବ୍ୟନିଷ୍ଠ ଏବଂ ବିଶ୍ୱସ୍ତ ବ୍ୟକ୍ତିଙ୍କ ବଞ୍ଚି ରହିବା କଷ୍ଟକର ହୋଇ ପଡ଼ିଲାଣି ।

ଏହା ସ୍ପଷ୍ଟ ପ୍ରମାଣିତ କରୁଛି - ତଥାକଥିତ ହିନ୍ଦୁ ସମାଜର ଚରିତ୍ର ହୀନତା ଓ ଅନୈତିକ ଆଚରଣର ପରିଣାମ ଯୋଗୁଁ ଆମେ ଆଗରେ ନୁହେଁ ପଛରେ ପଡିଯାଇଛୁ । ଆମର

ଆଧ୍ୟାତ୍ମିକ ଓ ଦର୍ଶନଶାସ୍ତ୍ରର ସିଦ୍ଧାନ୍ତ - ଆଦର୍ଶ ଏବଂ ଆକାଂକ୍ଷା ସହିତ ସିଧା ସଳଖଭାବେ ସମ୍ପର୍କ ଥିବାର ପ୍ରମାଣ ମିଳୁଛି ।

ତଥାକଥିତ ପୁନର୍ଜନ୍ମ ଏବଂ ମୋକ୍ଷପ୍ରାପ୍ତିର ସିଦ୍ଧାନ୍ତ ସବୁ ଆମକୁ ପରଲୋକବାଦ ଓ ଭାଗ୍ୟ ଭରସାରେ ରଖି ଅକର୍ମଣ୍ୟ କରି ଦେଉଛି । ଆମେ ଯାହା ବି କରୁଛୁ ବ୍ୟକ୍ତିଗତଭାବେ ନିର୍ବାଣ, ମୋକ୍ଷ ଏବଂ ସ୍ୱର୍ଗପ୍ରାପ୍ତି ପାଇଁ ହିଁ କରୁଛୁ । ସମାଜ ବା ଦେଶପାଇଁ ବିନା ସ୍ୱାର୍ଥରେ ଆମର ବ୍ୟକ୍ତିଗତ କର୍ତ୍ତବ୍ୟ ଓ ଅବଦାନ କିଛି ଅଛି ବୋଲି କୌଣସି ପ୍ରେରଣା କେଉଁଠୁ ମିଳୁନାହିଁ

ଆମର ପୁରାଣ ଶାସ୍ତ୍ରମାନଙ୍କରେ ଲେଖାଥିବା, ମହାପୁରୁଷମାନଙ୍କର ଚରିତ୍ର ମଧ୍ୟ ଆଜିର ସାଧାରଣ ପୁରୁଷମାନଙ୍କର ଚରିତ୍ରଠାରୁ କିଛି ଅଲଗା ଲାଗୁନି । ରାମଚନ୍ଦ୍ର, ରାବଣ ସହିତ ଯୁଦ୍ଧ କରିଥିଲେ, କେବଳ ନିଜର ସ୍ତ୍ରୀ ସୀତାଙ୍କୁ ମୁକୁଳେଇ ଆଣିବା ପାଇଁ । ସେ କୌଣସି ଦେଶର ମଙ୍ଗଳ ପାଇଁ ଯୁଦ୍ଧ କରି ନଥିଲେ । ଯଦି ତା' ହୋଇଥା'ନ୍ତା ସେ ତେର ବର୍ଷ ଯାଏଁ, ସୀତାଙ୍କ ଅପହରଣ ପର୍ଯ୍ୟନ୍ତ ଯୁଦ୍ଧ କରି ନଥିଲେ କାହିଁକି ? ଜଙ୍ଗଲରେ ଚୁପ ବସିଥିଲେ କାହିଁକି ? ତାଙ୍କର ସ୍ତ୍ରୀ ଜାତି ପ୍ରତି ଥିବା ହୀନ ଦୃଷ୍ଟିକୋଣ ମଧ୍ୟ ଆଜିର ମାନବ ସମାଜରେ ଗ୍ରହଣୀୟ ହେଉନାହିଁ । ରାବଣକୁ ବଧକରି ସୀତାଙ୍କୁ ଉଦ୍ଧାର କଲାପରେ ଟାଙ୍କୁ ସ୍ତ୍ରୀ ରୂପେ ଗ୍ରହଣ କରିବାକୁ ରାଜି ହେଲେ ନାହିଁ । କାରଣ ସୀତା ରାବଣର ଦେଶରେ (ତା' ଘରେ ନୁହେଁ) ରହିଥିବାରୁ ସେ କୁଆଡେ କଳୁଷିତା ହୋଇଯାଇଥିଲେ । ସୀତା ନିଜର ପତିବ୍ରତା ଓ ସତଚରିତ୍ରର ପ୍ରମାଣ ଦେବାପାଇଁ କଠୋର ଅଗ୍ନି ପରୀକ୍ଷା ଦେବାକୁ ପଡିଥିଲା । ତଥାପି ରାମଚନ୍ଦ୍ରଙ୍କ ସ୍ତ୍ରୀଙ୍କ ଉପରେ ବିଶ୍ୱାସ ନଥିଲା । ଜଣେ ସାଧାରଣ ରଜକୀର ବ୍ୟଙ୍ଗବାଣୀ ଶୁଣି ଗର୍ଭବତୀ ସ୍ତ୍ରୀଙ୍କୁ ଜଙ୍ଗଲକୁ ପଠାଇ ଦେଇଥିଲେ ।

ରାମ, ରାବଣକୁ ରଣକୌଶଳରେ ମାରିନାହାନ୍ତି ବରଂ ରାବଣର ଭାଇ ବିଭୀଷଣକୁ ପ୍ରଲୋଭନ ଦେଖାଇ, ନିଜ ସପକ୍ଷରେ କରିଥିଲେ । ରାବଣକୁ ବଧକରି ତାଙ୍କୁ ଲଙ୍କାଗଡର ରାଜା ଓ ମନ୍ଦୋଦରୀକୁ ସ୍ତ୍ରୀ ରୂପେ ଦେବାକୁ ପ୍ରତିଶ୍ରୁତି ଦେଇଥିଲେ । ବିଭୀଷଣ ସେଥିପାଇଁ, ଭାଇ ସହିତ ବିଶ୍ୱାସଘାତ କରି, ରାମଚନ୍ଦ୍ରଙ୍କୁ ସାହାଯ୍ୟ କରିଥିଲା । ଏଥିରେ ନୈତିକତା ଓ ଧର୍ମର ସ୍ଥାପନ କିପରି ହେଲା ? ବୁଝି ହେଉନି ।

ମହାଭାରତ କାହାଣୀରେ ମଧ୍ୟ ଶ୍ରୀକୃଷ୍ଣ କୁରୁକ୍ଷେତ୍ରରେ, ଅର୍ଜୁନଙ୍କୁ, ଦେଶ ବା ସମାଜର ହିତ ପାଇଁ ଯୁଦ୍ଧ କରିବାକୁ ଉପଦେଶ ଦେଇ ନଥିଲେ ବରଂ ବ୍ୟକ୍ତିଗତ ଭାବେ

"ଜିତିଲେ ରାଜ୍ୟ ଭୋଗ, ମଲେ ସ୍ୱର୍ଗ ଭୋଗ" କହି ଯୁଦ୍ଧ ପାଇଁ ପ୍ରେରିତ କରିଥିଲେ । ଏହି ଗୃହଯୁଦ୍ଧ ବା ଭାଇ ଭାଇଙ୍କ ମଧ୍ୟରେ, ଘଟିଥିବା ମହାଯୁଦ୍ଧ ମଧ୍ୟ ଛଳ, କପଟ ଏବଂ କୂଟନୀତି ବଳରେ ହିଁ ପାଣ୍ଡବମାନେ ଜିତିଛନ୍ତି । ପ୍ରକୃତରେ ଧର୍ମଯୁଦ୍ଧ ବୋଲାଉ ଥିବା ଏହି ଯୁଦ୍ଧ ଧର୍ମ ବା ବୀରତ୍ୱ ଦ୍ୱାରା ଜିତି ନାହାନ୍ତି । ଶ୍ରୀକୃଷ୍ଣ ନିଜର ସମସ୍ତ ସୈନ୍ୟ କୌରବଙ୍କୁ ଦେଇଦେଲେ, ଯଦିଓ ସେ ଜାଣିଥିଲେ ଯେ ଏହିସବୁ ସୈନ୍ୟଙ୍କୁ ଅର୍ଜୁନ ହତ୍ୟା କରିଦେବେ ଏବଂ ନିଜେ ପାଣ୍ଡବମାନଙ୍କ ସପକ୍ଷରେ ରହିଲେ । ଅର୍ଥାତ ଯିଏ ଜିତିବ, ସିଏ ଶ୍ରୀକୃଷ୍ଣଙ୍କ କୃତଜ୍ଞତା ସ୍ୱୀକାର କରିବ । ରାଜା ହେଉଛନ୍ତି ପ୍ରଜା ଓ ସୈନ୍ୟଙ୍କ ରକ୍ଷାକର୍ତ୍ତା । କିନ୍ତୁ ଏହି ଯୁଦ୍ଧରେ ଶ୍ରୀକୃଷ୍ଣ ଜାଣି ଶୁଣି ନିଜର ସୈନ୍ୟମାନଙ୍କୁ ମୃତ୍ୟୁ ମୁଖକୁ ଠେଲି ଦେଉଛନ୍ତି । ଯେଉଁଦେଶର, ଆଧ୍ୟାତ୍ମିକବାଦୀ, ମହାନ ତଥା ଆଦର୍ଶ ପୁରୁଷମାନେ, ନିଜର ଭାଇଙ୍କ ପ୍ରତି ଛଳ, କପଟ କରି ଯୁଦ୍ଧରେ ଜୟଲାଭ କରିପାରନ୍ତି, ସେହି ଦେଶର ସାଧାରଣ ଜନତା, ସଚ୍ଚୋଟ ଓ ଇମାନଦାର ରହିବେ କିପରି?

ଆମର ବାରମ୍ବାର ପରାଜିତ ହେବାର କେତେକ ମୁଖ୍ୟ କାରଣ ହେଉଛି - (କ) ଧର୍ମାନ୍ଧତା - ହିନ୍ଦୁ ସୈନିକଙ୍କ ବ୍ୟକ୍ତିଗତ ବୀରତ୍ୱ ଯଥେଷ୍ଟ ଥିଲେ ମଧ୍ୟ ଆତ୍ମବିଶ୍ୱାସ ଓ ମନୋବଳର ଘୋର ଅଭାବ ଥିଲା । ଗତ ହଜାର ବର୍ଷର ଯୁଦ୍ଧମାନଙ୍କର ଇତିହାସ, କେତେକ ମୁସଲମାନଙ୍କ ଦ୍ୱାରା ଲେଖା ଯାଇଥିବା ଘଟଣାକୁ ପଢିଲେ ଜଣାଯାଏ - ହିନ୍ଦୁସେନା ଯେତେବେଳେ ଜାଣି ପାରୁଥିଲେ, ଯେ ମୁସଲମାନ ସୈନିକ ନିଶ୍ଚୟ ଜିତିଯିବେ, ସେତେବେଳେ ସେମାନେ ପ୍ରାଣଭୟରେ, ଯୁଦ୍ଧଭୂଇଁରୁ ଛତ୍ରଭଙ୍ଗ ଦେଇ ପଳାଉଥିଲେ । ତା'ର ମୁଖ୍ୟ କାରଣ ଥିଲା – (କ) ଯଦି ସେମାନଙ୍କୁ ଯୁଦ୍ଧବନ୍ଦୀ ବନେଇ ଦିଆଯିବ, ତା'ହାଲେ ସେମାନଙ୍କର ଧର୍ମଭ୍ରଷ୍ଟ ହୋଇଯିବ । କିଛିଦିନ ମୁସଲମାନ ପାଖରେ ରହିବାପରେ, ଯଦିବା ସେମାନଙ୍କୁ ମୁକ୍ତ କରିଦିଆଯାଏ, ତେବେ ମଧ୍ୟ ସେମାନେ ନିଜ ପରିବାର ଓ ସମାଜକୁ ଫେରି, ସମ୍ମାନର ଜୀବନ ବିତେଇ ପାରିବେନି । ହିନ୍ଦୁ ଧର୍ମର ନୀତି ନିୟମ ଓ ସଂସ୍କାର ଅନୁସାରେ ଧର୍ମଭ୍ରଷ୍ଟ ହୋଇଥିବା ବ୍ୟକ୍ତିକୁ, ହିନ୍ଦୁଧର୍ମକୁ ଫେରାଇ ଆଣିବାକୁ କୌଣସି ସହଜ ବାଟନାହିଁ । କଠିନ ପ୍ରାୟଶ୍ଚିତ ପ୍ରକ୍ରିୟା ପାଳନକରି, ନିଜ ପରିବାର ଭିତରକୁ ଫେରି ଆସିଲେ ବି ସମାଜ, ଅଖିରେ ସେ ବିଧର୍ମୀ ଲୋକଭଳି ବ୍ୟବହାର ପାଏ । ସେଥିପାଇଁ ପରାଜିତ ହେବା ଭୟରେ, ସେ ପଳାୟନ କରୁଥିଲା କିମ୍ବା ଆତ୍ମହତ୍ୟା କରୁଥିଲା । ଶତ୍ରୁ ହାତରେ ଧରା ପଡିଗଲେ, ବାଧହୋଇ ଉକ୍ତ ଧର୍ମକୁ ସ୍ୱୀକାର କରି, ନିଜର ଧର୍ମ ପରିବର୍ତ୍ତନ କରିବାକୁ ପଡୁଥିଲା ।

(ଖ) ଛୁଆଁ ଅଛୁଆଁ ଭେଦଭାବ - ଆମ ଦେଶର ରାଜନୈତିକ ପରାଜୟ ସହିତ, ସାମାଜିକ ପତନ ଏବଂ ସାଂସ୍କୃତିକ ଅବକ୍ଷୟର ଯଦି ସବୁଠାରୁ ବଡ଼ ଓ ମୁଖ୍ୟ କରଣଟିଏ ଖୋଜି ବସିବା, ତା'ହେଉଛି - ହିନ୍ଦୁ ଜାତିର ଶିରା ପ୍ରଶିରାରେ ବ୍ୟାପ୍ତ ଜାତିଭେଦ ଏବଂ ଛୁଁଆ ଅଛୁଆଁର ବିଷ ଭରି ରହିଛି । ଗୀତାରେ ତଥାକଥିତ ଭଗବାନ ଶ୍ରୀକୃଷ୍ଣ ଘୋଷଣା କରିଛନ୍ତି - ଚାତୁର୍ବର୍ଣ୍ଣ୍ୟ ମୟାସୃଷ୍ଟମ ଗୁଣକର୍ମ ବିଭାଗ" ଅର୍ଥାତ " ମୁଁ ସ୍ୱୟଂ ଲୋକମାନଙ୍କର ଗୁଣକର୍ମ ଅନୁସାରେ ଚାରି ବର୍ଣ୍ଣର ସୃଷ୍ଟି କରିଛି ।" କିନ୍ତୁ ଗୁଣ କର୍ମ ଉପରେ ଆଧାରିତ ଏହି ବର୍ଣ୍ଣ ବ୍ୟବସ୍ଥା ବାସ୍ତବରେ ସେ ଯୁଗରେ କେତେ ମାନେ ରଖୁଥିଲା, ତାହା ମହାଭାରତର ଦୁଇଟି ମହାନ ଯୋଦ୍ଧା କର୍ଣ୍ଣ ଏବଂ ଏକଲବ୍ୟଙ୍କ ପ୍ରତି କରାଯାଇଥିବା ଅବିଚାରକୁ ଦେଖିଲେ ସ୍ପଷ୍ଟ ବୁଝି ହେଉଛି ।

ଏମିତି ତ ସିଦ୍ଧାନ୍ତ ରୂପେ ଆମେ "ବସୁଧୈବ କୁଟୁମ୍ବକମ" ର ଶାନ୍ତିବାଣୀ ପ୍ରଚାର କରି ନିଜକୁ ମହାନ ବୋଲି ପ୍ରଚାର କରୁଛୁ । ବାସ୍ତବରେ ଯୁଦ୍ଧ ସମୟରେ ଶତ୍ରୁ ବିରୁଦ୍ଧରେ ମିଳିତ ଭାବେ କାନ୍ଧକୁ କାନ୍ଧ ସହିତ ମିଶାଇ ଲଢେଇ କରୁଥିବା ଚାରିଜଣ ସୈନିକ, ଗୋଟିଏ ସ୍ଥାନରେ ଏକାଠି ବସି, ଭୋଜନ ଗ୍ରହଣ କରି ପାରୁନଥିଲେ । କାରଣ ସେମାନେ ଗୋଟିଏ ବର୍ଣ୍ଣର ହୋଇଥିଲେ ବି ସେମାନଙ୍କର ଗୋତ୍ର ଅଲଗା ଅଲଗା ହୋଇଥାଏ । ସେମାନଙ୍କର ଗୋତ୍ର ଓ ସମ୍ପ୍ରଦାୟର ଚିନ୍ତା ଯେତିକି, ହାତରେ ଥିବା ଖଣ୍ଡାର ଧାର ବା ରଣକୌଶଳ ଚିନ୍ତା ସେତିକି ନଥିଲା ।

(ଗ) ଧାର୍ମିକ ଅନ୍ଧବିଶ୍ୱାସ - ଇତିହାସ କହୁଛି, ଯେତେବେଳେ ମହମ୍ମଦ ଗଜନୀ ଜୁନାଗଡ଼ସ୍ଥିତ ପ୍ରସିଦ୍ଧ ସୋମନାଥମନ୍ଦିର ଉପରେ ଆକ୍ରମଣକଲା, ସେତେବେଳେ ସେଠିକା ବହୁ ସଂଖ୍ୟକ ପୂଜକମଣ୍ଡଳୀ ମନ୍ଦିରଦ୍ୱାର ସମ୍ମୁଖରେ ଧାଡ଼ିବାନ୍ଧି ଠିଆ ହୋଇଗଲେ । ସେମାନଙ୍କର ଅତୁଟ ବିଶ୍ୱାସଥିଲା ଯେ ଆମର ଭଗବାନଙ୍କ ମୂର୍ତ୍ତିକୁ ଯେଉଁ ମ୍ଳେଛ ବା ବିଧର୍ମୀ ଛୁଇଁବାକୁ ଚେଷ୍ଟା କରିବ, ସେ ଜଳିପୋଡି ଭସ୍ମ ହୋଇଯିବ । ହାତରେ କମଣ୍ଡଳୁ ଧରି, ପବିତ୍ର ଜଳକୁ କୁଶ ଦ୍ୱାରା ନିକ୍ଷେପ କରି କରି, ମନ୍ତ୍ର ଉଚ୍ଚାରଣ ପୂର୍ବକ ଶତ୍ରୁମାନଙ୍କୁ ଅଭିଶାପ ଦେଉଥିଲେ । ଦୁଃଖର ବିଷୟ ତାଙ୍କର ମନ୍ତ୍ରସିଦ୍ଧ ପବିତ୍ର ଜଳ ଓ ମନ୍ତ୍ର ଗଜନୀ ସୈନିକମାନଙ୍କର କୌଣସି କ୍ଷତି କରିପାରିଲା ନାହିଁ । ଶେଷରେ ସବୁକିଛି ଭାଙ୍ଗି ଧ୍ୱଂସକରି ଅପାର ଧନରାଶି ଲୁଣ୍ଠନକରି ସେମାନେ ଫେରିଗଲେ । ସେତେବେଳେ ଯଦି ଆମଦେଶର ସୈନିକମାନଙ୍କୁ ଯୁଦ୍ଧ କରିବାପାଇଁ ନିଯୁକ୍ତ କରାଯାଇଥାନ୍ତା, ତେବେ ଇତିହାସର ସ୍ୱରୂପ ଅନ୍ୟ କିଛି ହୋଇଥାନ୍ତା ।

**********

# ଗଣମାଧ୍ୟମରେ ଭିତ୍ତିହୀନ ପ୍ରସାରଣ ବନ୍ଦହେଉ

ସାଧାରଣତଃ ମଣିଷ କୌଣସି କଥାକୁ କାନରେ ଶୁଣି ଯେତିକି ବିଶ୍ୱାସ କରେ, ପୁସ୍ତକରେ ଲେଖାଥିବା ବିଷୟକୁ ପଢି ତା'ଠାରୁ ଅଧିକ ବିଶ୍ୱାସ କରିପାରେ ଏବଂ ଆଖିରେ ଦେଖିଥିବା ଘଟଣା କିମ୍ବା ଦୃଶ୍ୟକୁ ସେ ଖୁବଶୀଘ୍ର ଓ ସବୁଠାରୁ ଅଧିକ ବିଶ୍ୱାସ କରିପାରେ । ସେଥିପାଇଁ ତଥାକଥିତ ଗୁଣିଆ ଓ ତାନ୍ତ୍ରିକମାନେ ବିଭିନ୍ନ ପ୍ରକାର ବିଚିତ୍ର ବେଶଭୂଷା ଧାରଣ କରିଥା'ନ୍ତି । ଲୋକମାନଙ୍କୁ ପ୍ରଭାବିତ କରିବାପାଇଁ ଏଭଳି ବେଶ ଖୁବ ସାହାଯ୍ୟ କରିଥାଏ । ନାଟକରେ ଅଭିନୟ କରୁଥିବା କଳାକାରମାନଙ୍କ ଦ୍ୱାରା ପ୍ରଦର୍ଶିତ, ଚରିତ୍ରକୁ ଦେଖି ଦର୍ଶକମାନେ ପ୍ରଭାବିତ ହୋଇ ହସିବା ଓ କାନ୍ଦିବା ଦେଖାଯାଏ । କାହାଣୀର ସ୍ମୃତି ଅନେକ ଦିନ ପର୍ଯ୍ୟନ୍ତ, ଦର୍ଶକଙ୍କ ମନରେ ରହି ଯାଇଥାଏ । ଉପରୋକ୍ତ ଦୁଇଟି ଉଦାହରଣ ବିଗତ ଦିନମାନଙ୍କରେ, ମାତ୍ର କିଛି ଲୋକମାନଙ୍କୁ ପ୍ରଭାବିତ କରୁଥିଲା ।  କାରଣ ସେତେବେଳେ ବୈଦ୍ୟୁତିକ ଗଣ ମାଧ୍ୟମ ଟେଲିଭିଜନ, ଇଣ୍ଟରନେଟ , ମୋବାଇଲ ଇତ୍ୟାଦି ନଥିଲା ।

ଆଜି ସେ ଯୁଗ ନାହିଁ । ଟେଲିଭିଜନ ଆସିବା ପରଠାରୁ ସହର ଠାରୁ ଆରମ୍ଭ କରି ଗାଁ ପର୍ଯ୍ୟନ୍ତ, ସବୁରି ଘରେ ଏହାର ପ୍ରଚଳନ ହୋଇଛି । ତା'ଠାରୁ ଆହୁରି ଅଧିକ ବ୍ୟବହାର ହେଉଛି ମୋବାଇଲ । ତେଣୁ ଦେଶ ବିଦେଶର ଯେ କୌଣସି ଛୋଟ ବଡ ଖବର ହାତ ପାହାନ୍ତାରେ ପହଞ୍ଚି ଯାଉଛି ।

ମିଡ଼ିଆ ବା ଗଣମାଧ୍ୟମକୁ ଲୋକତନ୍ତ୍ରର ଚତୁର୍ଥ ସ୍ତମ୍ଭ ବୋଲି କୁହାଯାଉଛି । ସମାଜକୁ ଭଲ କ'ଣ, ମନ୍ଦ କ'ଣ ତର୍ଜମା ମୂଳକ ତଥ୍ୟ ଦେଖାଇବା, ସେମାନଙ୍କର ହେଉଛି ଗୁରୁ ଦାୟିତ୍ୱ । ସେହିଭଳି ସମାଜରେ ବ୍ୟାପ୍ତ ଅହେତୁକ ବିଶ୍ୱାସ, କୁସଂସ୍କାର ଓ ରୂଢିବାଦୀ ପରମ୍ପରା ଦ୍ୱାରା କିପରି କ୍ଷତି ହେଉଛି ତାହା ବୁଝାଇ କହିବା ଉଚିତ ।  ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କରି କର୍ମ କଲେ କିପରି ସଫଳତା ମିଳିପାରିବ ତାହା ପ୍ରଚାର କରିବା ଉଚିତ ।

ପରିତାପର ବିଷୟ ହେଉଛି - ଆଜି ପ୍ରାୟ ପ୍ରତ୍ୟେକ ଟିଭି ଚ୍ୟାନେଲରେ, ବିଭିନ୍ନ ଭିତିହୀନ ବିଶ୍ୱାସ ଆହୁରି ବେଶୀ ପ୍ରସାରିତ ହେଉଛି । ଏହା ଦେଖି ଲୋକମାନଙ୍କ ମନରେ ବହୁତ ଖରାପ ପ୍ରଭାବ ପଡୁଛି । ଏହା ସତ ଯେ ଟିଭି ମାଧ୍ୟମରେ ଯେ କୌଣସି ବିଷୟକୁ ଲୋକମାନଙ୍କ ମନରେ ଠୁସି ଦେଇହେବ । ଲୋକମାନେ ଟିଭି ଏବଂ ୟୁଟ୍ୟୁବମାନଙ୍କରେ ଦେଖା

ଯାଉଥିବା ଦୃଶ୍ୟ ଦେଖି ବିନା ତର୍କରେ ବିଶ୍ୱାସ କରିନିଅନ୍ତି । ଲୋକମାନଙ୍କର ଏହି ମନସ୍ତାତ୍ତ୍ୱିକ ଦୁର୍ବଳତାର ଫାଇଦା ଉଠାନ୍ତି ତଥାକଥିତ ପ୍ରବଚନ ଦେଉଥିବା ବାବା, ଜ୍ୟୋତିଷ ଶାସ୍ତ୍ରୀ ଓ ଧର୍ମଗୁରୁମାନେ ।

ଆଜି ପ୍ରତ୍ୟେକ ବ୍ୟକ୍ତି କୌଣସି ନା କୌଣସି ସମସ୍ୟାରେ ପୀଡ଼ିତ । ତା'ର ସମସ୍ୟାର ସମାଧାନ କରିବାପାଇଁ ସହଜରେ କାହାକୁ ଖୋଜି ପାଏନାହିଁ ।

ଅବଶ୍ୟ କିଛି ବ୍ୟକ୍ତି ଧୈର୍ଯ୍ୟର ସହ ପରିଶ୍ରମ କରି, ନିଜ ସମସ୍ୟାର ସମାଧାନ କରିଥାନ୍ତି । ଆଉ କିଛି ବ୍ୟକ୍ତି ଜ୍ଞାନବର୍ଦ୍ଧକ ପୁସ୍ତକ ପାଠକରି କିମ୍ବା ଅନୁଭବୀ ଜ୍ଞାନୀ ବ୍ୟକ୍ତିଙ୍କ ପରାମର୍ଶ ନେଇ, ସମସ୍ୟାକୁ ସମାଧାନ କରନ୍ତି । କିନ୍ତୁ ଯେଉଁମାନେ ଟିଭିରେ ପ୍ରସାରିତ ସମସ୍ତ ତଥ୍ୟକୁ ସତ୍ୟ ବୋଲି ମଣୁଛନ୍ତି, ସେମାନେ ବାରମ୍ବାର ପ୍ରଚାର ହେଉଥିବା ବାବା ଓ ଜ୍ୟୋତିଷମାନଙ୍କର ଚମତ୍କାରୀ ବସ୍ତୁ ଯଥା : ତାନ୍ତ୍ରିକ ମୁଦି, ତାବିଜ, ମନ୍ତ୍ରସିଦ୍ଧ ଯନ୍ତ୍ର ଆଦି ଦେଖି ଭ୍ରମରେ ପଡିଯାଆନ୍ତି । ସେମାନେ ଚ୍ୟାନେଲରେ ଦେଖୁଥିବା ବାବା ଓ ଜ୍ୟୋତିଷଙ୍କ ମୋବାଇଲ ନମ୍ବର କିମ୍ବା ଇଣ୍ଟର୍ନେଟ ଦ୍ୱାରା ଯୋଡି ହୋଇଯାନ୍ତି । ସେମାନେ ନିଜ ସହରରେ ଥିବା ବାବାଙ୍କ ଠିକଣାରେ ଯାଇ ପହଞ୍ଚି ଯାଆନ୍ତି । ତା' ପରେ ଆରମ୍ଭ ହୁଏ ବଶୀକରଣ ପ୍ରକ୍ରିୟା । ବାବା ଓ ଜ୍ୟୋତିଷଙ୍କ କହିବା ଅନୁସାରେ ପୀଡିତ ବ୍ୟକ୍ତି ବିଶ୍ୱାସ କରି, ଧାର୍ମିକ କର୍ମକାଣ୍ଡରେ ଅଯଥା ଧନ ଖର୍ଚ୍ଚ କାରିଥା'ନ୍ତି ।

ପିଲାଟି ବେଳୁ ଅହେତୁକ ବିଶ୍ୱାସରେ ବୁଡିରହିଥିବା ବୟସ୍କ ବ୍ୟକ୍ତି ମଧ ଭାବେ, ମନ୍ତ୍ରରେ ଅଦ୍ଭୁତ ଶକ୍ତି ଅଛି, ଯାହା ଫଳରେ ତା'ର ସମସ୍ତ ସମସ୍ୟାର ସମାଧାନ ହୋଇପାରିବ । ଗ୍ରହ, ନକ୍ଷତ୍ରମାନଙ୍କର ତଥାକଥିତ କୁପ୍ରଭାବ ଯୋଗୁଁ ମଣିଷ ଦୁଃଖ ଭୋଗ କରିଥାଏ, ବୋଲି ଟିଭି ପରଦାରେ ଦାବି କରୁଥିବା ବାବାମାନଙ୍କୁ ଦେଖି, ଧର୍ମଭୀରୁ ଲୋକମାନେ ବିଶ୍ୱାସ କରିଥାନ୍ତି । ତାଙ୍କର ଦାବିକୁ ସତ ପ୍ରମାଣିତ କରାଇବା ପାଇଁ, କିଛି ଲୋକଙ୍କୁ ଅଭିନୟ କରିବାକୁ, ଟ୍ରେନିଙ୍ଗଦେଇ ରଖା ଯାଇଥାଏ । ସେମାନେ ଦୃଢତାର ସହ କୁହନ୍ତି - "ମୋର ଅମୁକ ସମସ୍ୟା ଥିଲା, ଏହି ତାନ୍ତ୍ରିକ ମୁଦି ବା ତାବିଜ ବ୍ୟବହାର କରିବାରୁ, ମୋର ସମସ୍ୟା ଦୂର ହୋଇଗଲା । ମୋର ଅମୁକ ବ୍ୟାଧି ଥିଲା, ଏହା ଦ୍ୱାରା ମୁଁ ଆରୋଗ୍ୟ ଲାଭକଲି ।" ଏହିଭଳି ଅନେକ କିଛି ଫାଇଦା ପାଇଥିବା ଦାବିକରୁଥିବା, କୁଶଳୀ କଳାକାରମାନଙ୍କ ମୁହଁରୁ ଶୁଣିବା ପରେ, ଯାହାର

ସାମାନ୍ୟ ସନ୍ଦେହ ଥାଏ, ତୁରନ୍ତ ଦୂର ହୋଇଯାଏ । ସାଧାରଣ ଲୋକମାନଙ୍କ ଅପେକ୍ଷା ଶିକ୍ଷିତ ଓ ଧନୀ ଲୋକମାନେ, ଏହିସବୁ ବସ୍ତୁକୁ ମହଙ୍ଗା ଦାମରେ କିଣି ନିଅନ୍ତି ।

ଅଧିକାଂଶ ଲୋକପ୍ରିୟ ଟିଭିରେ 24 ଘଣ୍ଟାରୁ ପ୍ରାୟ ଏକ ଘଣ୍ଟା ସମୟ, ପ୍ରବଚନ ଶୁଣାଇବା, ଚମତ୍କାରୀ ପଥର, ମୁଦି, ତାବିଜ, ଲକେଟ, ଶ୍ରୀଶ୍ରୀଲକ୍ଷ୍ମୀ ଯନ୍ତ୍ର ଆଦି ବିକ୍ରି କରିବା ସହିତ, ସେହିଦିନର ରାଶିଫଳ କହିବା, ଗୃହରେ ବାସ୍ତୁଦୋଷ ନିବାରଣ  କରିବା ଉପାୟ ଆଦି ପ୍ରଚାର ହୋଇଥାଏ । ସରଳ ବିଶ୍ୱାସୀ ଜନତା ଟିଭିରେ ଦେଖିଥିବା ଚମତ୍କାରୀ ବସ୍ତୁ ନିଜେ କିଣନ୍ତି ଏବଂ ନିଜର ବନ୍ଧୁ ପରିଜନଙ୍କୁ ମଧ୍ୟ କିଣିବାକୁ ପ୍ରବର୍ତ୍ତାଇଥାନ୍ତି । ଟିଭି ପରଦାରେ ବସୁଥିବା ଭବିଷ୍ୟବକ୍ତାମାନଙ୍କର ପୋଷାକ ଏବଂ ସେମାନଙ୍କର ପ୍ରବଚନ ପରିବେଷଣ ଅତି ନାଟକୀୟ ହୋଇଥାଏ । ଜଣେ ଯାଦୁଗର ଭଳି ତା' ସାମନାରେ ଅନେକ ଜିନିଷ ଜମା କରି ରଖିଥାଏ । ଯଥା : ଲକେଟ, ମୁଦି, ତାବିଜ, ଲକ୍ଷ୍ମୀସିଦ୍ଧ ଯନ୍ତ୍ର, କୁବେର ଯନ୍ତ୍ର, ଶ୍ରୀଯନ୍ତ୍ର ଆଦି ।

ଆପଣ ତାଙ୍କୁ ନିଜର ସମସ୍ୟା ଜଣାଇବା କ୍ଷଣି ସେ ତୁରନ୍ତ ଉପାୟ ବତେଇ ଦେବେ । ଦଶ, କୋଡିଏ ଟଙ୍କାରେ ତିଆରି ମୁଦି, ଲକେଟ, ଡେଉଁରିଆ ଓ ଶ୍ରୀଯନ୍ତ୍ର ଆଦି ହଜାର ହଜାର ଟଙ୍କାରେ ବିକ୍ରି ହୋଇପାରୁଛି ।

ଗତ କିଛି ଦିନ ତଳେ ହିନ୍ଦୀ ସିନେମା ଜଗତର ଦୁଇଟି ବିଖ୍ୟାତ କଳାକାର, ମୁକେଶ ଖାନ୍ନା ଓ ଆଲୋକନାଥ ଲାଲ ପୁସ୍ତକ ବିକ୍ରି ପାଇଁ ପ୍ରଚାର କରୁଥିଲେ । ଉକ୍ତ ପୁସ୍ତକରେ ରାତାରାତି ଧନୀ ହୋଇଯିବାର, ଉପାୟ ସବୁ ଲେଖାଅଛି ବୋଲି କହୁଥିଲେ । ଏହି ପୁସ୍ତକ ଦ୍ୱାରା ଲାଭାନ୍ୱିତ ହୋଇଥିବା କଥା ପ୍ରମାଣିତ କରିବାପାଇଁ କିଛି ଲୋକ ଟିଭି ପରଦାରେ ଗର୍ବର ସହିତ ସ୍ୱୀକାର କରୁଥିଲେ ।

ଏହି ଦୃଶ୍ୟ ପ୍ରଦର୍ଶନ ପାଇଁ ପରଦା ପଛରେ ଥିବା କାହାଣୀ କିନ୍ତୁ କେହି ଜାଣନ୍ତି ନାହିଁ । ଟିଭି ଚ୍ୟାନେଲ ନିଜର ଟି.ଆର.ପି ବଢାଇବା ଓ ଲୋକପ୍ରିୟ କରିବାପାଇଁ ସର୍ବଦା ଅନୁସନ୍ଧାନ ଓ ଗବେଷଣା କରିଥାନ୍ତି । ଦର୍ଶକମାନଙ୍କ ପସନ୍ଦ ଓ ରୁଚିକୁ ନେଇ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଥାନ୍ତି । ସେମାନଙ୍କର ପ୍ରଶିକ୍ଷିତ ସାମ୍ବାଦିକମାନେ ଭଲ ଭାବେ ଜାଣିଛନ୍ତି ଯେ ଆମ ଦେଶର ଶିକ୍ଷିତ କିନ୍ତୁ ବୋକା ବ୍ୟକ୍ତିଙ୍କ ସଂଖ୍ୟା ବହୁତ ବେଶୀ । ସେମାନଙ୍କର ବୋକାପଣର ସୁଯୋଗ ନେଇ ଯଥେଷ୍ଟ ଧନ ସଂଗ୍ରହ କରିହେବ । ସରଳ ବିଶ୍ୱାସୀଙ୍କୁ  ସହଜରେ ମାନସିକ ଶୋଷଣ କରିହେବ । ସେମାନେ ତଥାକଥିତ ବାବା ଓ ଜ୍ୟୋତିଷମାନଙ୍କୁ ଯୋଗାଯୋଗ କରି ବ୍ୟବସାୟିକ ପଦ୍ଧତି

ତିଆରି କରନ୍ତି । କେତେକ ବାବା ଓ ଜ୍ୟୋତିଷ ଚ୍ୟାନେଲମାନଙ୍କ ସହିତ ନିଜଆଡୁ ସମ୍ପର୍କ କରି ମୋଟା ଅଙ୍କର ଟଙ୍କା ଦେବାକୁ ଲୋଭ ଦେଖାଇଥାନ୍ତି । ଦ୍ୱିତୀୟରେ ତଥାକଥିତ ଚମତ୍କାରୀ ବସ୍ତୁ ତିଆରି କରୁଥିବା "ନବଗ୍ରହ ସେବା ସଂସ୍ଥାନ" ଓ "ଦିବ୍ୟ ଋଷି ସେବା ସଂସ୍ଥାନ" ନିଜର ଜିନିଷକୁ ପ୍ରଚାର କରିବାପାଇଁ ଚ୍ୟାନେଲମାନଙ୍କୁ ଯଥେଷ୍ଟ ଟଙ୍କା ଦେଇଥାନ୍ତି । କିଛି କଳାକାରମାନଙ୍କୁ ଅର୍ଥ ଦେଇ ବସ୍ତୁର ଗୁଣଗାନ କରିବା ପାଇଁ (ମିଛ କହିବା) ଯୋଗାଡ କରିଥାନ୍ତି । ଏହିଭଳି ସୁକଳ୍ପିତ ଢଙ୍ଗରେ ତିଆରି ଗୋଲକ ଧନ୍ଦାରେ, ଦର୍ଶକ ବିଚାରା ଧରା ନ ପଡି ଆଉ ଯିବେ କୁଆଡେ ?

ଟିଭିରେ ଦେଖାଯାଉଥିବା, ତାନ୍ତ୍ରିକ ଓ ଜ୍ୟୋତିଷମାନେ ନିଜର ମୋବାଇଲ ନମ୍ବରକୁ ଏସ.ଏମ.ଏସ କରି କିମ୍ବା ଫୋନକରି ସମସ୍ୟାର ସମାଧାନ କରିବାକୁ ନିର୍ଦ୍ଦେଶ ଦେଇଥାନ୍ତି । ଉକ୍ତ ବିଶେଷ ନମ୍ବରକୁ ଫୋନ କରିବା ଦର ସାଧାରଣ ଦର ଅପେକ୍ଷା ଅନେକ ବେଶୀ । ତେଣୁ ଫୋନ କରୁଥିବା ଲୋକଙ୍କୁ ପ୍ରାୟ ଦଶ ପନ୍ଦର ମିନିଟ ପର୍ଯ୍ୟନ୍ତ ହୋଲଡ୍ କରି ରଖାଯାଏ । ଗୋଟିଏ ଘଣ୍ଟାର ପ୍ରୋଗ୍ରାମରେ, ଶହଶହ ଲୋକଙ୍କ
ଫୋନ କଲକୁ, ଯଦି ଦଶରୁ ପନ୍ଦର ମିନିଟ ଅଟକାଇ ରଖାଯାଏ, ତେବେ ଅନୁମାନ କରନ୍ତୁ, ଫୋନ କମ୍ପାନୀମାନଙ୍କୁ କେତେ ଲକ୍ଷ ଟଙ୍କାର ଫାଇଦା ମିଳୁଥିବ ? ସେହି ଫାଇଦାରୁ କିଛି ଅଂଶ ଚ୍ୟାନେଲ ମାଲିକ, ଆଉ କିଛି ଅଂଶ ଜ୍ୟୋତିଷ ମହାଶୟ ପାଉଥିବେ । ଫୋନ କରି ଟଙ୍କା ଖର୍ଚ୍ଚ କରୁଥିବା ଲୋକଙ୍କୁ ମିଳିଥାଏ, କେବଳ ମିଥ୍ୟା ଆଶ୍ୱାସନା । ବିଡମ୍ବନା ହେଉଛି - ସେମାନେ ତଥାପି ଅନୁତପ୍ତ ନୁହନ୍ତି କିମ୍ବା କେବେ ବୁଝିପାରନ୍ତି ନାହିଁ ଯେ ତାଙ୍କୁ କେହି ଠକି ଦେଉଛି ।

ଆଜିକାଲି ନ୍ୟାସନାଲ ଚ୍ୟାନେଲ ସହିତ, ପ୍ରତ୍ୟେକ ଭାଷାରେ ଏକାଧିକ ଆଧ୍ୟାତ୍ମିକ ଚ୍ୟାନେଲ ପ୍ରସାର କରୁଛନ୍ତି । ସେହି ଚ୍ୟାନେଲମାନଙ୍କରେ ଆଧ୍ୟାତ୍ମିକ ବିଷୟରେ କିମ୍ବା ମାନବ ବିଜ୍ଞାନ ବିଷୟରେ ଖୁବ କମ ଚର୍ଚ୍ଚା ହୁଏ କିନ୍ତୁ ଅହେତୁକ ବିଶ୍ୱାସ ଓ ଅବୈଜ୍ଞାନିକ ଚିନ୍ତାଧାରାକୁ ବୃଦ୍ଧି କରୁଥିବା ଅନେକ କାର୍ଯ୍ୟକ୍ରମ ପ୍ରସାର ହୋଇଥାଏ । ଏହି ସବୁ ଚ୍ୟାନେଲରେ ନିର୍ମଳବାବା ଭଳି ଶହ ଶହ ଭବିଷ୍ୟବକ୍ତା ଏବଂ ପ୍ରବଚନ ଶୁଣାଉଥିବା ଧର୍ମଗୁରୁମାନେ ସତସଙ୍ଗ ସ୍ଥାନରୁ ସିଧା ପ୍ରସାରଣ କରିବାପାଇଁ ଚ୍ୟାନେଲମାନଙ୍କ ସହ ଅନୁବନ୍ଧ କରିଥାନ୍ତି । ଏହା ଦ୍ୱାରା ଭକ୍ତମାନଙ୍କର ସଂଖ୍ୟା ବୃଦ୍ଧି ହୋଇଥାଏ । ତା' ସହିତ ଧନ ମଧ୍ୟ ବର୍ଷା ହୋଇଥାଏ ଏବଂ ଉଭୟ ପକ୍ଷ କୋଟି କୋଟି ଟଙ୍କା ଭାଗ ପାଇଥାନ୍ତି ।

ଭାରତୀୟ ସମାଜକୁ, ଅହେତୁକ ବିଶ୍ୱାସରୁ ମୁକ୍ତ କରିବାପାଇଁ, ଟିଭି ଗଣମାଧ୍ୟମ ଯଦି ନିଜର ହୀନସ୍ୱାର୍ଥ ତ୍ୟାଗ କରି ଆଗେଇ ଆସିବେ, ତେବେ ଭଣ୍ଡ ବାବା ଓ ତାନ୍ତ୍ରିକମାନଙ୍କର ଦୋକାନରେ ତାଲା ପଡ଼ିଯିବ । ସାଧାରଣ ଜନତା ଅସଲ ସତ୍ୟକୁ ବୁଝିପାରି, ମାନସିକ ଶୋଷଣରୁ ମୁକ୍ତ ହୋଇପାରିବେ । ସେମାନଙ୍କର ମନରେ ଉଚିତ କର୍ମ କରିବାପାଇଁ ବିଶ୍ୱାସ ଜାଗ୍ରତ ହୋଇପାରିବ । କୌଣସି ଚମତ୍କାର ଦ୍ୱାରା ଧନ ପ୍ରାପ୍ତି ସମ୍ଭବ ନୁହେଁ, ଏହି ଭୁଲ ଧାରଣାରୁ ମୁକ୍ତି ପାଇବେ । ଯଦି ସରକାର ଏଥିପାଇଁ ଗଣମାଧ୍ୟମ ଉପରେ କଡା ନିର୍ଦ୍ଦେଶ ଜାରିକରି ଅହେତୁକ ବିଶ୍ୱାସ ବୃଦ୍ଧି କରୁଥିବା ଘଟଣା ଓ ଦୃଶ୍ୟକୁ ପ୍ରଚାର ବନ୍ଦ କରିପାରିବେ, ତେବେ ଅତି ଉତ୍ତମ ହେବ । କାରଣ ସ୍ୱାର୍ଥ ତ୍ୟାଗ କରିବାପାଇଁ ନିବେଦନ କରିବା ଅର୍ଥ, ପାଣିକୁ ଠେଙ୍ଗାରେ ପିଟି ଦୁଇ ଭାଗ କରିବା ଭଳି ଏକ ଦୁଃସ୍ୱପ୍ନ ମାତ୍ର ।

ସବୁଠାରୁ ସହଜ ଓ ଖାଣ୍ଟି ଉପାୟ ହେଉଛି - ଲୋକମାନେ ହେତୁବାଦୀ ସାହିତ୍ୟ ଉପରେ ପ୍ରକାଶିତ ପତ୍ରିକା ଓ ପୁସ୍ତକ ପାଠକରି ନିଜକୁ ନିଜେ ବିଶ୍ଳେଷଣ କରନ୍ତୁ । ଅସଲ ସତ୍ୟର ସନ୍ଧାନ ପାଇପାରିବେ । ସେମାନଙ୍କୁ ଆଉ କେହି ଠକି ପାରିବେ ନାହିଁ । ପ୍ରଥମତଃ ସେମାନେ ସେଭଳି ଦୃଶ୍ୟ ଦେଖିବା ବନ୍ଦ କରି ଦେବେ, କିମ୍ବା ଦେଖିଲେ ମଧ୍ୟ ତର୍କକରି ସତ୍ୟ ପରୀକ୍ଷା କରିବେ । ଜନତା ସଚେତନ ହେଲେ କିଛି ଦିନ ପରେ, ସେମାନଙ୍କର ଠକ ଦୋକାନ, ଗ୍ରାହକ ଶୁନ୍ୟ ହୋଇ ଆପେ ଆପେ ବନ୍ଦ ହୋଇଯିବ । ସେତେବେଳେ ଆମେ ହୁଏତ ଚନ୍ଦ୍ର ଗ୍ରହଣକୁ ଭୟ କରି ଘର କୋଣରେ ଲୁଚି ବସିବା ଛାଡ଼ି, ସେହି ସମୟରେ ଆମେ ଖେଳ କୁଦ କରିପାରିବା ।

********

# ଗରିବ ଦେଶର ଧନୀ ଭଗବାନ

ଅଧା ଅଧୁରା ଐତିହାସିକ ଜ୍ଞାନ ରଖୁଥିବା ଅନେକ ଭାରତୀୟଙ୍କ ମତରେ ଏକଦା ଆମ ଦେଶ କୁଆଡେ ଧନ ଧାନ୍ୟରେ ପୂର୍ଣ୍ଣ ଥିଲା । ଆମ ଦେଶରେ ଏତେ ପରିମାଣରେ ହୀରା, ନୀଳା, ମୋତି, ମାଣିକ୍ୟ, ସୁନା ଓ ରୂପା ଭରି ରହିଥିଲା ଯେ ଅନ୍ୟ ଦେଶର ଲୋକମାନେ ବାରମ୍ବାର ଆକ୍ରମଣ କରି ତାଙ୍କ ଦେଶକୁ ଅଜସ୍ର ଧନ ଲୁଟି ନେଇ ଯାଉଥିଲେ । ଧନ ଲୁଟି ନେଉଥିବା କଥାଟି ସତ, ହେଲେ ପ୍ରଶ୍ନ ଉଠୁଛି - ଏହି ସବୁ ଧନ କେଉଁଠି ଅସୁରକ୍ଷିତ ଭାବେ ରହୁଥିବାରୁ ବାହାର ଲୋକ ସହଜରେ ଲୁଟି ନେଇ ପାରୁଥିଲେ ?

ବ୍ୟକ୍ତିଗତ ଭାବେ ନିଜଘର ଭିତରେ ସାଇତି ରଖୁଥିବା ଧନ କିମ୍ବା ରାଜକୋଷ ଭିତରୁ ଧନ ଲୁଟି ନେଇଥିବା ଉଦାହରଣ ଇତିହାସରେ ମିଳେନାହିଁ । କାରଣ ସେହି ଧନକୁ ସୁରକ୍ଷିତ ରଖିବାପାଇଁ ଲୋକମାନେ ଏବଂ ରାଜ୍ୟର ସୈନିକମାନେ ପ୍ରତିରୋଧ କରୁଥିଲେ । ଇତିହାସରୁ ମିଳୁଥିବା ତଥ୍ୟ ଅନୁସାରେ ସର୍ବାଧିକ ଧନ ଲୁଟ ହୋଇଛି ଭାରତର ବଡବଡ ବିଖ୍ୟାତ ହିନ୍ଦୁ ମନ୍ଦିରମାନଙ୍କର ଗନ୍ତାଘରୁ । ମନ୍ଦିରର ଧନ ଅର୍ଥାତ ଭଗବାନଙ୍କର ଧନକୁ ସୁରକ୍ଷା ଦେବାର ଦାୟିତ୍ୱ ମଧ୍ୟ ତଥାକଥିତ ଭଗବାନଙ୍କର ହେବା ଉଚିତ । ସର୍ବସାଧାରଣ ଲୋକମାନେ ଦାନ କରିଥିବା ଧନ ଉପରେ ସର୍ବସାଧାରଣଙ୍କ ଅଧିକାର ମଧ୍ୟ ନାହିଁ । ତେଣୁ ସେହି ଧନକୁ ରକ୍ଷା କରିବାପାଇଁ, କିଏ କାହିଁକି ପ୍ରାଣବଳି ଦେବ ? ସେହି ଧନକୁ ଯିଏ ନେଇଯାଉଛି ନେଉ, ଆମର କ'ଣ ବା କ୍ଷତି ହେବ ? ଦୋଷୀମାନଙ୍କୁ, ପରେ ଭଗବାନ ଦଣ୍ଡ ଦେବେ ନାହିଁକି ? ସେମାନେ ଭଗବାନଙ୍କ ଧନ ଚୋରେଇ ଖାଇଥିବାରୁ, ଅନେକ ଅସାଧ ରୋଗରେ ପଡିବେ, ମଲା ପରେ ତ ନିଶ୍ଚୟ ନର୍କଦଣ୍ଡ ଭୋଗ କରିବେ । ତା'ବ୍ୟତୀତ ଧନ ହେଉଛି, ମାୟାର ପ୍ରତୀକ । ଆମେ କାହିଁକି ମାୟାରେ ଜଡିତ ହେବୁ ? ଧନ ଯାଉ, ଆମେ ତ ଭୋକିଲା ପେଟରେ ମଧ ଭଜନ କୀର୍ତ୍ତନ କରି ଶାନ୍ତିରେ ରହି ପାରୁଛୁ ।

ଏହିଭଳି ତର୍କ ଦେଇ, ନିଜର ଅପାରଗତାକୁ ଘୋଡାଇ ରଖିବା ପାଇଁ, ଆମର ଧର୍ମଗୁରୁମାନେ ଆତ୍ମପ୍ରବଞ୍ଚନା କରୁଥିଲେ । ସେମାନଙ୍କୁ ଏକ ସ୍ୱରରେ ଅନ୍ଧଭକ୍ତମାନେ, ସମର୍ଥନ କରୁଥିଲେ । ଏହିଭଳି ଦାୟିତ୍ୱହୀନ ପ୍ରବୃତ୍ତି ଓ ଭ୍ରାନ୍ତଅବଧାରଣା ଯୋଗୁଁ, ବିଗତ ଦିନମାନଙ୍କରେ, ବିଦେଶୀ ଲୁଟେରାମାନେ, ମନ୍ଦିରରୁ ଧନ ଲୁଟି ନେଉଥିଲେ । ଯାହା ବଞ୍ଚିଛି,

ସେହି ଧନ ଉପରେ, ଆଜିର ଅନେକ ତଥାକଥିତ ସାଧୁ, ସନ୍ୟାସୀ, ବାବାମାନେ କବଜା କରି ବସିଛନ୍ତି । ସୁଯୋଗ ମିଳିଲେ, କିଛି ଚୋର, ଡାକୁ ମଧ୍ୟ ଧନ ଭଣ୍ଡାରକୁ, ଖାଲି କରି ନେଇଯାଉଛନ୍ତି । କୌଣସି ଭଗବାନ କିଛି କରି ପାରୁ ନାହାନ୍ତି । ଶେଷରେ ଠକି ହେଉଛନ୍ତି, ସାଧାରଣ ସରଳ ବିଶ୍ୱାସୀ ଜନତା । ଭକ୍ତମାନଙ୍କ ଦାନ କରାଯାଇଥିବା ଧନ, ଭକ୍ତମାନଙ୍କ ସେବାରେ ନ ଲାଗି, ଧନ ଯାଉଛି କାମଚୋର, ପଳାୟନବାଦୀ ତଥାକଥିତ ଭଣ୍ଡ ସନ୍ଥମାନଙ୍କ ପାଖକୁ ।

ଆଜି ଆମଦେଶର ପ୍ରତ୍ୟେକ ଜିନିଷର ଦର ଦାମ ଏତେ ପରିମାଣରେ ବଢି ଯାଇଛି ଯେ ସାଧାରଣ ଜନତା ହନ୍ତସନ୍ତ ହେଉଛନ୍ତି । ଭାରତୀୟ ଟଙ୍କାର ମୂଲ୍ୟ ଆଶାତୀତ ଭାବେ ହ୍ରାସ ପାଉଛି । ଦୁନିଆରେ ଭାରତ ଏକ ଗରିବ ଦେଶର ତାଲିକାରେ ସ୍ଥାନ ପାଉଛି । ଜଗତୀକରଣ, ବୈଷୟିକରଣ ସତ୍ତ୍ୱେ ବେକାର ଓ ବେରୋଜଗାରଙ୍କ ସଂଖ୍ୟା ବୃଦ୍ଧି ପାଉଛି । କୃଷକମାନଙ୍କର ଆତ୍ମହତ୍ୟା ବଢି ଚାଲିଛି । ଅର୍ଥ ଲୋଭ ଦେଖାଇ ଯୁବତୀମାନଙ୍କୁ ବିଭିନ୍ନ ଦେଶ ବିଦେଶକୁ ଚାଲାଣ କରାଯାଉଛି । ଅନ୍ୟ ପକ୍ଷରେ ଦେଶର ମଠ ଓ ମନ୍ଦିରମାନଙ୍କର ଧନଭଣ୍ଡାର ଭରିଭରି ଚାଲିଛି । ସେହି ଧନକୁ ସୁରକ୍ଷା ଦେବାପାଇଁ ତଥାକଥିତ ଦେବୀ ଦେବତାଙ୍କ ଶକ୍ତି ନ ଥିବାରୁ ମାନବଶକ୍ତିକୁ ହିଁ ବ୍ୟବହାର କରାଯାଉଛି । ସୁରକ୍ଷାରେ ସାମାନ୍ୟ ଅବହେଳା ହେଲେ ଚୋର, ଡାକୁମାନେ ମନ୍ଦିର ଭିତରୁ ଦେବତାମାନଙ୍କ ଉପସ୍ଥିତିରେ, ସବୁ ଧନ ଲୁଟି ନେଉଛନ୍ତି ।

ଏଥର ଆସନ୍ତୁ ଦେଖିବା ଦେଶର କେତେକ ପ୍ରସିଦ୍ଧ ମନ୍ଦିରମାନଙ୍କର ଆୟ ସମ୍ପର୍କୀୟ ଖବର । ଆଧ୍ୟାତ୍ମିକ ବିଶ୍ୱାସ ଓ ଧନ ତାଲିକାରେ ସବୁଠାରୁ ଉପରେ ଅଛି - "ତିରୁମଲାର ତିରୁପତି ବାଲାଜୀ ମନ୍ଦିର ।" ନବମ ଶତାବ୍ଦୀ ପୂର୍ବରୁ ତିଆରି ଏହି ମନ୍ଦିରକୁ, ପ୍ରତିଦିନ ପ୍ରାୟ ପଚାଶ ହଜାରରୁ ଉର୍ଦ୍ଧ୍ୱ ଭକ୍ତ ଦର୍ଶନ କରିବାକୁ ଆସିଥାନ୍ତି । ବର୍ଷର କିଛି ବିଶେଷ ପର୍ବଦିନମାନଙ୍କରେ ପନ୍ଦର କୋଡିଏ ଲକ୍ଷ ପର୍ଯ୍ୟନ୍ତ ଭକ୍ତ ଆସିଥାନ୍ତି । ସେମାନେ କେବଳ ଦର୍ଶନ କରନ୍ତି ନାହିଁ, ତା'ସହିତ ମନ ଖୋଲି ଦାନ, ଦକ୍ଷିଣା ମଧ୍ୟ ଦେଇଥାନ୍ତି । କେବଳ ନବରାତ୍ରୀ ସମୟରେ ହିଁ ଦଶ, ବାର କୋଟି ଟଙ୍କା ଓ କିଛି କୁଇଣ୍ଟାଲ ସୁନା ମନ୍ଦିର ହୁଣ୍ଡିରୁ ପ୍ରାପ୍ତ ହୋଇଥାଏ । ବର୍ତ୍ତମାନ ବାଲାଜୀ ମନ୍ଦିରରେ ପ୍ରାୟ ଏକ ଲକ୍ଷ କୋଟି ଟଙ୍କାର ସମ୍ପତ୍ତି ଗଚ୍ଛିତ ଅଛି । ଏହା ଭାରତର ମୋଟ ବଜେଟର ପ୍ରାୟ ଅଧା ଭାଗ ସହିତ ସମାନ ! 2011 ମସିହାରେ ମୋଟ 1700 କୋଟି ଟଙ୍କାର ଆୟ ଭିତରୁ, 1100 କୋଟି ଟଙ୍କା କେବଳ ଦାନପେଟିରୁ

(ହୁଣ୍ଡି) ମିଳିଥିଲା । ହୁଣ୍ଡିରେ ଜମାହେଉଥିବା ଟଙ୍କା ଅଖାରେ ଭର୍ତ୍ତି କରି, ହିସାବ କରିବାକୁ ନିଆଯାଏ । ବାଲାଜୀ ମନ୍ଦିରରେ ପ୍ରତିବର୍ଷ 350 କିଲୋରୁ, ଅଧିକ ସୁନା ଏବଂ 500 କିଲୋରୁ ଅଧିକ ରୁପା ଦାନ କର ଯାଇଥାଏ । ଶୁଣାଯାଏ ଇଂରେଜମାନେ, ବାଲାଜୀ ମନ୍ଦିରର ଭବ୍ୟ ନିର୍ମାଣ ଶୈଳୀ ଓ ଭକ୍ତମାନଙ୍କର ଦ୍ୱାରା ଦାନକରାଯାଉଥିବା ଧନର ପରିମାଣ ଦେଖି ଆଶ୍ଚର୍ଯ୍ୟ ହେଉଥିଲେ । ଇଷ୍ଟଇଣ୍ଡିଆ କମ୍ପାନୀ ବାଲାଜୀ ମନ୍ଦିରରୁ ସବୁଠାରୁ ବେଶୀ ରୁପା କିଣି ନେଉଥିଲେ । ଗତ 2008 ଓ 2009 ମସିହାରେ ବାଲାଜୀ ମନ୍ଦିରର ବଜେଟ 1925 କୋଟି ଟଙ୍କା ଥିଲା । ଏହି ମନ୍ଦିରର ପ୍ରଶାସନ "ତିରୁମାଲା ତିରୁପତି ଦେବସ୍ଥାନମ ଟ୍ରଷ୍ଟ" ବିଭିନ୍ନ ବ୍ୟାଙ୍କରେ 10 ହଜାର କୋଟି ଟଙ୍କାର ଫିକ୍ସଡ଼ ଡିପୋଜିଟ କରାଇଛନ୍ତି ।

ଭାରତର ପ୍ରମୁଖ ଧନୀ ମନ୍ଦିରମାନଙ୍କରେ ଯେତିକି ପରିମାଣରେ ସୁନା ଗଚ୍ଛିତ ଅଛି, ହୁଏତ ଆମର ରିଜର୍ଭ ବ୍ୟାଙ୍କରେ ସେତିକି ନାହିଁ । ଦେଶର ଆହୁରି ଅନେକ ବିଖ୍ୟାତ ମନ୍ଦିର ହେଉଛି - କେରଳର ଗୁରୁବାୟୁର ମନ୍ଦିର, ଶିରିଡି ସାଇବାବା, ମୁମ୍ବାଇରେ ସିଦ୍ଧି ବିନାୟକ, ଜମ୍ମୁ ପ୍ରଦେଶର ମାତା ବୈଷ୍ଣଦେବୀ, ଗାନ୍ଧୀ ନଗରର ଅକ୍ଷରଧାମ, ବିଶାଖାପାଟନମର ସୀମାଞ୍ଚଳ, ପୁରୀର ଜଗନ୍ନାଥ, କୋଲକାତାର କାଳୀମାତା, ଅମୃତସରର ସ୍ୱର୍ଣ୍ଣ ମନ୍ଦିରମାନଙ୍କର ବାର୍ଷିକ ଆୟ ସହଜରେ କେହି କହି ପାରିବେ ନାହିଁ ।

କେରଳର ସବରିମାଳା ପାହାଡ଼ରେ ଅବସ୍ଥିତ, ଗୁରୁବାୟୁର ଦେବସ୍ଥାନାମରେ ଗତ 2010 ମସିହା ଜାନୁୟାରୀ ମାସର ପନ୍ଦରଦିନ, ମଧ୍ୟରେ ଆୟାପ୍ପା ସ୍ୱାମୀଙ୍କ ଭକ୍ତମାନଙ୍କ ଦ୍ୱାରା ଦାନ କରାଯାଇଥିବା, ଧନର ପରିମାଣ 120 କୋଟି ଟଙ୍କା ଥିଲା । ଏହି ମନ୍ଦିରର ବିଶେଷତ୍ୱ ହେଉଛି, ଯେ ବର୍ଷ ସାରା ଏହି ମନ୍ଦିର ବନ୍ଦ ରହେ । କେବଳ ଜାନୁୟାରୀ ମାସରେ ହିଁ କିଛି ଦିନ ଆୟାପ୍ପାସ୍ୱାମୀଙ୍କ ଦର୍ଶନ ପାଇଁ, ମନ୍ଦିର ଖୋଲା ରହେ । ଆହୁରି ଏକ ମଜା କଥା ହେଉଛି - ଏହି ମନ୍ଦିରକୁ ଛଅ ବର୍ଷରୁ ଷାଠିଏ ବର୍ଷର ସ୍ତ୍ରୀମାନଙ୍କୁ ପ୍ରବେଶ କରିବା ନିଷେଧ । କାରଣ ଏହି ବୟସ ଭିତରେ ସ୍ତ୍ରୀମାନେ ରଜସ୍ୱଳା ହୋଇଥାନ୍ତି । ସେହି ସ୍ତ୍ରୀମାନେ ଆୟାପ୍ପାସ୍ୱାମୀଙ୍କୁ ଛୁଇଁଦେଲେ ଠାକୁର ଅପବିତ୍ର ହୋଇଯିବେ ବୋଲି ସମସ୍ତେ ବିଶ୍ୱାସ କରୁଛନ୍ତି । ଏହି ମନ୍ଦିରରେ ବିଶେଷ ଧରଣର ପୂଜା କରିବାପାଇଁ 50 ହଜାରରୁ ଊର୍ଦ୍ଧ୍ୱ ଟଙ୍କା ଦେଇ ଭକ୍ତମାନେ ଆଡ଼ଭାନ୍ସ ବୁକିଙ୍ଗ କରାଇଥାନ୍ତି । ଖବର କାଗଜରେ ପ୍ରକାଶିତ ଗୋଟିଏ ଖବର ଅନୁସାରେ ଆସନ୍ତା 2049

ମସିହା ପର୍ଯ୍ୟନ୍ତ ଏହି ପୂଜା ପାଇଁ ବୁକିଙ୍ଗ ସରିଲାଣି । ଗୁରୁବାୟର ମନ୍ଦିର ପ୍ରଶାସନ ବ୍ୟାଙ୍କରେ 125 କୋଟି ଟଙ୍କା ଫିକ୍ସ ଡିପୋଜିଟ କରାଇଛନ୍ତି ।

ମହାରାଷ୍ଟ୍ରର ଶିରିଡି ସାଇବାବା ମନ୍ଦିରର ଖ୍ୟାତି ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ଏହି ମନ୍ଦିରର ଦୈନିକ ଆୟ ପ୍ରାୟ 60 ଲକ୍ଷରୁ ଅଧିକ ଏବଂ ବାର୍ଷିକ 360 କୋଟିରୁ ଊର୍ଦ୍ଧ୍ୱ ବୋଲି ଜଣାପଡିଛି । "ଶିରିଡି ସାଇବାବା ସନାତନ ଟ୍ରଷ୍ଟ"ର ସଞ୍ଚାଳକମାନେ ହିଁ ଜାଣନ୍ତି, ଅସଲ ପରିମାଣ କେତେ ? ମହାରାଷ୍ଟ୍ରର ଅନ୍ୟ ଏକ ଧନୀ ସିଦ୍ଧି ବିନାୟକ ମନ୍ଦିରରେ ଗତ 2010 ଓ 2011 ମସିହାରେ ବାର୍ଷିକ ଆୟ ଥିଲା 49 କୋଟି ଟଙ୍କା । 250 ବର୍ଷରୁ ଅଧିକ ପୁରୁଣା ଏହି ସିଦ୍ଧିବିନାୟକ ମନ୍ଦିର ମୁମ୍ବାଇର ପ୍ରଭାଦେବୀ ଅଞ୍ଚଳରେ ଅବସ୍ଥିତ ।

ଜାମ୍ମୁର ମାତା ବୈଷ୍ଣଦେବୀଙ୍କ ମନ୍ଦିର ବି ବର୍ଷକୁ 500 କୋଟିରୁ ଅଧିକ ଟଙ୍କାର ଧନ ପ୍ରାପ୍ତ କରିଥାଏ । ମଜା କଥା ହେଉଛି - ଦକ୍ଷିଣ ଭାରତର ମନ୍ଦିରମାନଙ୍କ ଭଳି ଏହି ମନ୍ଦିର ବେଶୀ ପୁରୁଣା ନ ହେଲେ ବି ଖ୍ୟାତି ପ୍ରାପ୍ତ କରିବାରେ ଦକ୍ଷିଣର ମନ୍ଦିରମାନଙ୍କ ଠାରୁ କମ ନୁହେଁ ।

ମାତା ବୈଷ୍ଣଦେବୀଙ୍କୁ ଦର୍ଶନ କରିବାପାଇଁ ପ୍ରତିବର୍ଷ ଲକ୍ଷଲକ୍ଷ ତଥାକଥିତ ଭକ୍ତଙ୍କ ସମାଗମ ହୋଇଥାଏ । କଳା ସ୍ଥାପତ୍ୟ ଓ ସମୃଦ୍ଧିରେ ଚମକୁଥିବା ହିନ୍ଦୁମାନଙ୍କର, ଅକ୍ଷରଧାମ ମନ୍ଦିର, ଆଜି ବହୁତ ପ୍ରସିଦ୍ଧି ଲାଭକରିଛି । ଗାନ୍ଧୀ ନଗର ଓ ଦିଲ୍ଲୀର ଅକ୍ଷରଧାମ ମନ୍ଦିରର, ବାର୍ଷିକଆୟ 50 ଲକ୍ଷରୁ ଏକ କୋଟିଟଙ୍କା ପର୍ଯ୍ୟନ୍ତ ହୋଇଥାଏ ।

ଭାରତର ଆହୁରି ଅନେକ ମନ୍ଦିର ଯଥା: ପୁରୀର ଜଗନ୍ନାଥମନ୍ଦିର, ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର, ଗୁଆହାଟିର କାମାକ୍ଷାମନ୍ଦିର, ଝାଡଖଣ୍ଡର ବୈଦ୍ୟନାଥ ମନ୍ଦିର, ତାମିଲନାଡୁର ମୁରୁଗାନମନ୍ଦିର, ବୃନ୍ଦାବନ ସ୍ଥିତ ବାଙ୍କେବିହାରୀମନ୍ଦିର, ଉଜ୍ଜୈନର ମହାକାଳେଶ୍ୱରମନ୍ଦିର, ବନାରସର ବିଶ୍ୱନାଥମନ୍ଦିର, ଗୁଜରାଟର ସୋମନାଥମନ୍ଦିରରେ, ଭକ୍ତମାନେ ଖୋଲାମନରେ ଦାନ କରିଥାନ୍ତି । ହିନ୍ଦୁମନ୍ଦିର ଭଳି ବୌଦ୍ଧମଠ ଓ ଶିଖମାନଙ୍କର ଗୁରୁଦ୍ୱାରମାନଙ୍କରେ ମଧ ଯଥେଷ୍ଟ ଧନ ଏକତ୍ର ହେଉଛି ।

ଦୁନିଆର ସବୁଠାରୁ ଧନୀ ମନ୍ଦିର ଆମେରିକା, ରୁଷିଆ, ଜର୍ମାନ, ଚୀନ କିମ୍ବା ଜାପାନରେ ମଧ ନାହିଁ, ଅଛି କେବଳ ଭାରତରେ । ଭାରତରେ ପ୍ରକୃତରେ କେତୋଟି ମନ୍ଦିର ଅଛି, ଗଣନା କରି କହିବା ସମ୍ଭବ ନ ହେଲେ ବି ବିଭିନ୍ନ ସ୍ରୋତରୁ ପ୍ରାପ୍ତ ସୂଚନା ଅନୁସାରେ

ପ୍ରାୟ ସତୁରି ଲକ୍ଷ ଛୋଟ ଓ ବଡ ମନ୍ଦିର ଅଛି । ସେଥିରୁ ପ୍ରାୟ ଏକ ଶହ ମନ୍ଦିରର ବାର୍ଷିକ ଆୟ ଭାରତର ସାଧାରଣ ବଜେଟରେ ବ୍ୟୟ ଯୋଜନା ସହିତ ସମାନ ହେବ । ଅନ୍ତତଃ ଦଶଗୋଟି ସର୍ବାଧିକ ଧନୀ ମନ୍ଦିରର ସମ୍ପତ୍ତି, ଭାରତର ଧନୀବ୍ୟକ୍ତିଙ୍କ ସୂଚୀରେ ଥିବା ଏକ ଶହ ପୁଞ୍ଜିପତିଙ୍କ ସମ୍ପତ୍ତିରୁ ବି ଅଧିକ ହେବ ।

ଏଇଠି ବିଚାରଣିୟ ବିଷୟ ହେଉଛି - ଯଦି ଭକ୍ତଗଣ ଭକ୍ତି ଓ ଆଧ୍ୟାତ୍ମିକ ବିଶ୍ୱାସ ଯୋଗୁଁ ନିଜର କଷ୍ଟ ଉପାର୍ଜିତ ଧନ କିମ୍ବା ଅସତ ଉପାୟରେ ଅର୍ଜିତ ଧନକୁ ଦାନ କରୁଛନ୍ତି, ସେଥିରେ କାହାରି ଆପତ୍ତି କରିବାର ନାହିଁ । କିନ୍ତୁ ଜମା ହେଉଥିବା ଅଜସ୍ର ଧନକୁ ସ୍ଥାୟୀ ଭାବେ ଗଚ୍ଛିତ କରି ରଖିବା କିମ୍ବା କେତେକ ସ୍ୱାର୍ଥନ୍ୱେଷୀ ବ୍ୟକ୍ତିଙ୍କ ଦ୍ୱାରା ଦୁରୂପଯୋଗ କରିବା ହେଉଛି ଅନ୍ୟାୟ । ସେହି ଧନକୁ ଯଦି ସୁଚାରୁ ରୂପେ ଜନସେବାରେ ବିନିଯୋଗ କରାଯାଇ ପାରନ୍ତା, ତେବେ ନିଶ୍ଚିତ ଭାବେ ଭାରତ ଗରିବ ଦେଶ ବୋଲି ବଦନାମ ହୁଅନ୍ତା ନାହିଁ । ଆମର ଅନେକ ବୁଦ୍ଧିଜୀବୀ, ସଚେତନ ନାଗରିକ, ଆଜି ବିଦେଶରେ ଜମାଥିବା କଳା ଟଙ୍କା ଦେଶକୁ ଫେରାଇ ଆଣିବାପାଇଁ ଆନ୍ଦୋଳନ ମାଧ୍ୟମରେ ଦାବି କରୁଛନ୍ତି, ଅଥଚ ନିଜ ଦେଶର ମନ୍ଦିରମାନଙ୍କରେ ଜମାଥିବା ଧନକୁ ଜନ ସେବାରେ ବ୍ୟବହାର କରିବା ପାଇଁ କେହି ଦାବି କରୁନାହାନ୍ତି କାହିଁକି?

***********

## ମୋର ଅନ୍ୟ ପ୍ରବନ୍ଧ ପୁସ୍ତକ ତାଲିକା

| | |
|---|---|
| ତର୍କର ଉର୍ଦ୍ଧ୍ୱରେ କିଏ ? | ମୂଲ୍ୟ ଟ.୨୦/- |
| ହେତୁବାଦର ଆବଶ୍ୟକତା | ମୂଲ୍ୟ ଟ. ୫୦/- |
| ଅଦ୍ଭୁତ ଜନବିଶ୍ୱାସ | ମୂଲ୍ୟ ଟ. ୨୦/- |
| ହେତୁବାଦୀ ରହସ୍ୟ | ମୂଲ୍ୟ ଟ. ୫୦/- |
| ତର୍କ ଶୀଳ ଚିନ୍ତନ | ମୂଲ୍ୟ ଟ. ୨୦/- |
| ହେତୁବାଦୀ ବିଚାର | ମୂଲ୍ୟ ଟ. ୨୦/- |

ଲେଖକଙ୍କୁ 9482016260 ରେ ଯୋଗାଯୋଗ କଲେ

ରିହାତି ମୂଲ୍ୟରେ ବହି ପାଇପାରିବେ ।

# ଫେଙ୍ଗସୁଇ ସୌଭାଗ୍ୟ ନୁହେଁ ଅନ୍ଧବିଶ୍ୱାସ ବୃଦ୍ଧି କରେ

'ଫେଙ୍ଗସୁଇ' (Fengshui) ଏକ ଚାଇନା ଶବ୍ଦ । ଏହାର ଅର୍ଥ ହେଉଛି ପବନ - ପାଣି । ଚାଇନାରେ ପ୍ରାୟ 3000 ବର୍ଷ ତଳୁ ଏହି କଳା ପ୍ରଚଳିତ । ସୁସ୍ୱାସ୍ଥ୍ୟ ପାଇଁ ନିର୍ମଳ ପବନ ଓ ପାଣିର ଆବଶ୍ୟକତା ରହିଛି । ସେହିଭଳି ଆଲୁଅର ବି ସ୍ୱାସ୍ଥ୍ୟ ଉପରେ ପ୍ରଭାବ ପଡିଥାଏ । ମଣିଷ ବାସ କରିବାପାଇଁ କେଉଁ ସ୍ଥାନରେ, କିଭଳି ଗୃହ ତିଆରି କଲେ ପାଣି, ପବନ ଓ ଆଲୁଅ ଠିକ ପରିମାଣରେ ମିଳିପାରିବ ଏବଂ ମଣିଷ ସୁସ୍ଥ ରହିପାରିବ, ସେହି ବିଜ୍ଞାନକୁ ଫେଙ୍ଗସୁଇ କଳା ସମର୍ଥନ କରୁଛି ।

ପ୍ରଶ୍ନ ଉଠୁଛି - ପରବର୍ତ୍ତୀ କାଳରେ 'ଫେଙ୍ଗସୁଇ' ପବନ ଓ ପାଣିରୁ ପରିବର୍ତ୍ତନ ହୋଇ, ବିଭିନ୍ନ ବସ୍ତୁରେ କିପରି ପରିଣତ ହୋଇଗଲା ? ବସ୍ତୁ ଗୁଡିକର ସୁନ୍ଦର ସ୍ୱାସ୍ଥ୍ୟ ଓ ତଥାକଥିତ ଭାଗ୍ୟ ସହିତ କିପରି ସମ୍ପର୍କ ସ୍ଥାପିତ ହେଇଗଲା ? ବସ୍ତୁ ଗୁଡିକ ଘରେ ରଖିଲେ କିମ୍ବା ଶରୀରରେ ଧାରଣ କଲେ, ସତରେ କୌଣସି ଚମତ୍କାର ହେଉଛି କି ନାହିଁ ? ଉପରୋକ୍ତ ପ୍ରଶ୍ନ ଗୁଡିକର ତର୍କସଙ୍ଗତ ଓ ପ୍ରାମାଣିକ ଉତ୍ତର କାହାରି ପାଖରେ ନାହିଁ ।

ଚାଇନାରେ 'ଫେଙ୍ଗସୁଇ' ବସ୍ତୁ ଗୁଡିକର ଉତ୍ପାଦନ, କୁଟୀରଶିଳ୍ପ ଗୁଡିକରେ ହୋଇଥାଏ । କିଛି ବର୍ଷ ପୂର୍ବରୁ ମାତ୍ର କେତୋଟି ବସ୍ତୁ, ବଜାରକୁ ଆସିଥିଲା । 'ୱାଇଣ୍ଡଚାଇମ, ଲାଫିଙ୍ଗବୁଦ୍ଧା, କ୍ରିଷ୍ଟାଲବଲକୁ ତଥାକଥିତ ସୌଭାଗ୍ୟର ପ୍ରତୀକ ଭାବେ ଲୋକମାନେ, କିଣିନେଇ ଘରେ ରଖୁଥିଲେ । ଆଜିର ବଜାରରେ, ଏକ ଶହରୁ ଊର୍ଦ୍ଧ୍ୱ ଫେଙ୍ଗସୁଇ ବସ୍ତୁ ଉପଲବ୍ଧ ଅଛି । ମଣିଷ ଜୀବନରେ, ସମସ୍ତ ପ୍ରକାର ସମସ୍ୟାର ସମାଧାନ ପାଇଁ, ଅଲଗା ଅଲଗା ଫେଙ୍ଗସୁଇ ବସ୍ତୁର ଆବଶ୍ୟକତା ଦର୍ଶାଇ ଟିଭି, ଇଣ୍ଟରନେଟ ଓ ଖବର କାଗଜରେ ଯେଉଁଭଳି ଧୁରନ୍ଧର ଭାବେ ପ୍ରଚାର କରୁଛନ୍ତି, ତାକୁ ଦେଖି ଶିକ୍ଷିତ ଓ ଧନୀ ଲୋକମାନେ ହିଁ ବେଶୀ ପ୍ରଭାବିତ ହେଉଛନ୍ତି । ଫେଙ୍ଗସୁଇ ବସ୍ତୁଗୁଡିକର ଚାହିଦା ବଢି ଯାଉଥିବାରୁ, ପ୍ରତି ସହରରେ ଫେଙ୍ଗସୁଇ ବ୍ୟୁଟିକ ଖୋଲି ଯାଉଛି । ତା'ସହିତ ପ୍ରତ୍ୟେକ ସପିଙ୍ଗ ମଲ, ଗିଫ୍ଟ ପାର୍ଲର, ଟୟ ଷ୍ଟୋର, ଜେନେରାଲ ଷ୍ଟୋର, ଷ୍ଟେସନାରୀ ସପ ଏବଂ ଫୁଟପାଥ ଉପରେ ମଧ୍ୟ ଏହି ବସ୍ତୁଗୁଡିକ ବିକ୍ରିହେଉଛି । ଭାଗ୍ୟବାଦୀ ଇଞ୍ଜିନିୟର, ଡାକ୍ତର, ଶିକ୍ଷକ, ବ୍ୟବସାୟୀ, ସରକାରୀ ଅଫିସର, ମନ୍ତ୍ରୀ, ଉଚ୍ଚ ବର୍ଗ, ମାଧ୍ୟମ ବର୍ଗର, ଅଧିକାଂଶ ବ୍ୟକ୍ତି ନିଜର ତଥାକଥିତ ଭାଗ୍ୟରେ ପରିବର୍ତ୍ତନ

ଆଣିବାପାଇଁ ଫେଙ୍ଗସୁଇ ବସ୍ତୁଗୁଡ଼ିକୁ ବ୍ୟବହାର କରିଥାଚି । ତଥାକଥିତ ବାସ୍ତୁଶାସ୍ତ୍ରୀମାନେ, ପରିବାରର ଲୋକମାନେ କୁଶଳ - ମଙ୍ଗଳରେ ଚଳିବା ପାଇଁ ବିଭିନ୍ନ ବସ୍ତୁ, କିଣିବାକୁ ନିର୍ଦ୍ଦେଶ ଦେଇଥାନ୍ତି । ପ୍ରେମ ସମସ୍ୟା, ଚାକିରି, କୋର୍ଟ କଚେରୀ ସମସ୍ୟା, ଅସାଧ ରୋଗର ସମସ୍ୟା, ଏପରିକି କଳାବଜାରୀ ଓ ଅନୈତିକ ବ୍ୟାପାରରେ, ଧନ ଲାଭ ପାଇଁ, ମଧ ଫେଙ୍ଗସୁଇ ବସ୍ତୁର ବହୁତ ଡିମାଣ୍ଡ ରହିଛି । କେବଳ ମୁମ୍ବାଇ ସହରରେ, ପ୍ରତିବର୍ଷ ଏକଶହ କୋଟି ଟଙ୍କାର ଫେଙ୍ଗସୁଇ ବସ୍ତୁର କାରବାର ହୋଇଥାଏ । ପୁରା ଦେଶରେ ପ୍ରାୟ ଏକହଜାର କୋଟି ଟଙ୍କାର କାରବାର ହୋଇଥାଏ ।

ଫେଙ୍ଗସୁଇ ବସ୍ତୁ ଗୁଡିକର ନାମତାଲିକା ବହୁତ ଲମ୍ବା । ସେଥିରୁ କେତୋଟିର ନାମ ଓ ତାକୁ ପ୍ରୟୋଗ କଲେ ଫାଇଦା ଦେଖନ୍ତୁ - ୱଣ୍ଡିଚାଇମ ସବୁଠାରୁ ବେଶୀ ଲୋକ ପ୍ରିୟ । ଏହା ମଣିଷ ମନରୁ ନିରାଶା ଓ ବିଫଳତା ଦୂର କରେ, ତଥାକଥିତ ଦୁର୍ଭାଗ୍ୟକୁ ସୌଭାଗ୍ୟର ପରିଣତ କରିପାରେ । ସେହିଭଳି ଲାଫିଙ୍ଗ ବୁଦ୍ଧା, ପରିବାରର ସୁଖ, ସମୃଦ୍ଧି ବୃଦ୍ଧି କରିଥାଏ । ଲାଫିଙ୍ଗ ବୁଦ୍ଧାକୁ ନିଜେ କିଣି ଘରେ ରଖିବା ଅପେକ୍ଷା, ଅନ୍ୟ କେହି ଉପହାର ଦେଲେ, କୁଅଦେ ବେଶୀ ପ୍ରଭା ଶାଳୀ ହୋଇଥାଏ । ସେଥିପାଇଁ ପ୍ରାୟ ଲୋକମାନେ ପରସ୍ପରକୁ ଲାଫିଙ୍ଗ ବୁଦ୍ଧା କିଣି ଉପହାର ଦିଅନ୍ତି ।

ଲୁକଫୁକ ସାଉ ମୂର୍ତ୍ତି, କ୍ରିଷ୍ଟାଲ ବଲ, ମୁନିଆ କ୍ରିଷ୍ଟାଲ ଗ୍ଲୋବ, ଘଣ୍ଟିଯୁକ୍ତ ଭାଗ୍ୟଶାଳୀ ମୁଦ୍ରା, ଲଭ ବାର୍ଡ଼, ଏନର୍ଜି ସାଇଟ, ୱାଟର ଫାଉଣ୍ଟେନ, ଫେଙ୍ଗସୁଇ ମିରର, ଏକ୍ୟୁକେସନ ଟାୱାର, ଡ୍ରାଗନ ମାସ୍କ, ରେଶମ ସୂତାରେ ବନ୍ଧା ହୋଇଥିବା ତିନୋଟି ମୁଦ୍ରା, ଧନପାତ୍ର, ମାନି ଫ୍ରଗ, ମେରୁ ଯନ୍ତ୍ର, ଲାଭ ଲଫାଫା, ଡ୍ରାଗନ ଟର୍ଟଲ, ସ୍ଲୀପିଙ୍ଗ ବଏ, ହେଲଥ ଫ୍ରଗ, ଲକି ବାଁମ୍ବୁ, ହ୍ୱାଇଟ ଷ୍ଟୋନ ଆଦି ଅନେକ ଅନେକ ନାମକ ବସ୍ତୁ ବିକ୍ରି ହେଉଛି । ଏହି ସବୁ ବସ୍ତୁର ଓଡ଼ିଆ କିମ୍ବା ଭାରତୀୟ ଭାଷାରେ ନାମ ପଚାରନ୍ତୁ ନାହିଁ । କେହି କହି ପାରିବେ ନାହିଁ । ଦୋକାନୀ ଓ ଗ୍ରାହକ ସମସ୍ତେ ଇଂରାଜୀରେ ହିଁ ଜାଣନ୍ତି ।

ଫେଙ୍ଗସୁଇ ବସ୍ତୁ ସମ୍ପର୍କରେ ଶୁଣା ଯାଉଥିବା ମିଥ୍ୟା ଆଶ୍ୱାସନାଗୁଡିକର ତାଲିକା ମଧ କିଛି କମ ନୁହେଁ । କେଉଁ ବସ୍ତୁ କେଉଁ ଭଳି ସମସ୍ୟାର ସମାଧାନ କରେ ତାହାର କିଛି ଉଦାହରଣ ଦେଖନ୍ତୁ । 'ମେରୁଯନ୍ତ୍ର' ଗୋଟିଏ କଚ୍ଛପ ପିଠିରେ ପିରାମିଡ଼ ଭଳି ଦେଖା ଯାଉଥିବା ବସ୍ତୁ ହେଉଛି ସୌଭାଗ୍ୟର ପ୍ରତୀକ । 'ମନି ଫ୍ରଗ' ତିନି ଗୋଡିଆ ବେଙ୍ଗ ମୂର୍ତ୍ତିକୁ ମୂଖ୍ୟ ଦ୍ୱାର

ଆଡକୁ ମୁହଁ କରି ରଖିଲେ ସମୃଦ୍ଧି, ବେଙ୍ଗ ମୁହଁରେ ଧରିଥିବା ମୁଦ୍ରା, ଘରେ ପ୍ରଚୁର ଧନ ପ୍ରବେଶର ପ୍ରତୀକ । ରେଶମ ସୂତାରେ ବନ୍ଧା ହୋଇଥିବା ତିନୋଟି ମୁଦ୍ରାକୁ ପକେଟରେ ବା ପର୍ସରେ ରଖିଲେ ଧନ ଓ ସଫଳତା ମିଳିବ ବୋଲି କୁହା ଯାଉଥିବାରୁ, ଏହା ଯୁବକ ଯୁବତୀଙ୍କ ଭିତରେ ବେଶୀ ପ୍ରଚଳିତ । ଦାମ୍ପତ୍ୟ ଜୀବନରେ ଘଟୁଥିବା ମନୋମାଳିନ୍ୟ ଓ ଅଶାନ୍ତିକୁ ଦୂର କରିବାପାଇଁ କ୍ରିଷ୍ଟାଲ ବଲ ଘରେ ରଖିବା ଭଲ କୁହାଯାଏ । ଘର ଭିତରେ 'ୱାଟର ଫାଉଣ୍ଟେନ' ରଖିଲେ ସ୍ୱାମୀ ଓ ସ୍ତ୍ରୀଙ୍କର ସେକ୍ସ ପାୱାର ବୃଦ୍ଧି ହୁଏ । 'ଏନର୍ଜି ସାଇଟ' ନାମକ ସାଧାରଣ ସମୁଦ୍ର ଲୁଣକୁ ମହଙ୍ଗା ଦାମରେ ବିକ୍ରି ହେଉଛି । କାରଣ ଏହି ସାଇଟକୁ ପାଣିରେ ମିଶାଇ ଘରେ ଛିଞ୍ଚିଲେ ପରିବାରର ଲୋକମାନଙ୍କର ବ୍ୟକ୍ତିତ୍ୱର ବିକାଶ ହୁଏ । ଏହା ଦ୍ୱାରା ପୁରୁଷ ଓ ସ୍ତ୍ରୀଙ୍କର ସେକ୍ସ ପାୱାର ମଧ୍ୟ ବୃଦ୍ଧି ହୋଇଥାଏ ।

ଯଦି ଅଧିକ ପାୱାର ଦରକାର ତେବେ ଗିନାରେ ଲୁଣ ଭର୍ତ୍ତିକରି କୌଣସି କବାଟ କିମ୍ବା ଝରକାର ବାମ ପାଖରେ ଥୋଇ ଦିଅ । ପ୍ରେମ ପ୍ରସଙ୍ଗରେ ସଫଳତା ପ୍ରାପ୍ତି ପାଇଁ 'ଲଭ ବାର୍ଡ଼' ଦୁଇଟି ଧଳା ପାରାକୁ ଘର ଭିତରେ ଥୋଇଲେ ପ୍ରେମିକ ଓ ପ୍ରେମିକା ପରସ୍ପର ପ୍ରତି ଆକର୍ଷିତ ହୁଅନ୍ତି । ଯଦି ଶୀଘ୍ର ସଫଳତା ପାଇବାକୁ ଚାହାନ୍ତି, ତେବେ 'ମେଡରିନ ଧଳା ବତକ' ଯୋଡିଏ ସାଙ୍ଗରେ ଥୋଇ ଦିଅନ୍ତୁ । ପ୍ରେମିକ ବା ପ୍ରେମିକା କାଳ ବିଳମ୍ବ ନ କରି ପାଖକୁ ଦୌଡ଼ି ଆସିବ । 'ଫ୍ରେଣ୍ଡସିପ ଷ୍ଟାଚ୍ୟୁ' ବନ୍ଧୁତ୍ୱ ପାଇବା ଢଙ୍ଗରେ ଠିଆ ହୋଇଥିବା ପୁଅ ବା ଝିଅଙ୍କ ମୂର୍ତ୍ତି, 'ରୋଜ କ୍ୱାର୍ଟଜ' ପିରାମିଡ଼କୁ ମଧ ପ୍ରେମକୁ ସ୍ଥାୟୀତ୍ୱ ଦେବାପାଇଁ ଘରେ ରଖ ଯାଇପାରେ ।

ଉପରୋକ୍ତ ସମସ୍ତ ଉଦାହରଣକୁ ଯଦି ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର ଓ ତର୍ଜମା କରାଯାଏ,ତେବେ ବୁଝିହେବ ଯେ କେବଳ କହା ଶୁଣା କଥାକୁ, ବିଶ୍ୱାସ କରି ଫେଙ୍ଗସୁଇ ନାମରେ, ଗୁଡ଼ାଏ ବସ୍ତୁ ଘରେ ଆଣି ରଖିଲେ, ଆମର ସମସ୍ତ ଦୁଃଖ ଦୂର ହୋଇଯିବ ବୋଲି ଭାବିବା, ତାହା ସମ୍ପୂର୍ଣ୍ଣ ଭୁଲ ଏବଂ ମନକୁ ଶାନ୍ତ କରିବା ପାଇଁ, ଏକ ମିଥ୍ୟା ଆଶ୍ୱାସନା ବୋଲି କୁହା ଯାଇପାରିବ ।

ବେଙ୍ଗାଲୁରୁର ଜଣେ ଇଞ୍ଜିନିୟର ପରିଚିତ ଯୁବକ, ଗୋଟିଏ ସପିଙ୍ଗ ମଲରୁ, ଏହିଭଳି କିଛି ଜିନିଷ କିଣି ନେବାକୁ ଖୋଜୁଥିବା ବେଳେ, ମୁଁ ତାଙ୍କୁ ପଚାରିଲି - ସତରେ କ'ଣ ଏହି ଫେଙ୍ଗସୁଇ ବସ୍ତୁଗୁଡ଼ିକର କିଛି ପ୍ରଭାବ ପଡିଥାଏ ? ସେ ହସିଦେଇ କହିଲେ - ଚାରି ପାଞ୍ଚଶହ ଟଙ୍କାରେ ପ୍ରେମ ପ୍ରସଙ୍ଗରେ ସଫଳତା ପାଇଁ ଫେଙ୍ଗସୁଇ ବସ୍ତୁଗୁଡ଼ିକ ବଜାରରେ

ମିଳୁଛି ତ ପରୀକ୍ଷା କରିବାପାଇଁ କିଣିନେଲେ କ୍ଷତି କଅଣ ? ଯଦି ତାହା ନ ହେଲା, ତେବେ ଘରେ 'ଶୋ ପିସ' ହୋଇ ରହିଯିବ ।

ବେଙ୍ଗାଲୁରୁର ଜଣେ ବୁଦ୍ଧିଜୀବୀ, ହେତୁବାଦୀ କହିଲେ - ଫେଙ୍ଗସୁଇ ନାମରେ ଭାରତରେ, ଯେତେ ପ୍ରକାର ବସ୍ତୁ ବିକ୍ରି ହେଉଛି, ସେ ସବୁ ଚାଇନାର ହସ୍ତଶିଳ୍ପ ବା କୁଟୀରଶିଳ୍ପରୁ ଉତ୍ପାଦନ ହେଉଛି । ଏହିସବୁ ବସ୍ତୁଗୁଡ଼ିକୁ ସେମାନେ କୌଣସି ଧର୍ମୀୟ ଭାବନା ରଖି ତିଆରି କରି ନଥାନ୍ତି । ଆମ ଦେଶର ଲୋକମାନେ ପ୍ରାଚୀନ କାଳରୁ ଚମତ୍କାର ଦ୍ୱାରା ବେଶୀ ପ୍ରଭାବିତ ହୋଇଥାନ୍ତି । ଚମତ୍କାର ପଛରେ ଥିବା ବୈଜ୍ଞାନିକ କାରଣ ଖୋଜିବାକୁ କେହି ଧ୍ୟାନ ଦେଇ ନଥାନ୍ତି ।

ଫେଙ୍ଗସୁଇର ବସ୍ତୁ ଉପରେ ବିଶ୍ୱାସ ବଢିବାର ଏକ ମୁଖ୍ୟ କାରଣ ହେଉଛି - ଆମର ଜ୍ୟୋତିଷ ଶାସ୍ତ୍ରୀ, ବାବା ଓ ଆଧ୍ୟାତ୍ମିକ ଗୁରୁମାନେ ରାହୁ, କେତୁ, ଶନି ଆଦି ଦୁଷ୍ଟଗ୍ରହର ପ୍ରଭାବରୁ ରକ୍ଷା କରିବା ପାଇଁ ଅନେକ ପ୍ରକାର ପୂଜା, ପାଠ, ଯଜ୍ଞ, ବ୍ରତ ଉପବାସ ଆଦି ଦ୍ୱାରା ଆର୍ଥିକ, ଶାରୀରିକ ଓ ମାନସିକ ଶୋଷଣ କରୁଛନ୍ତି ।

ଏମାନଙ୍କର କର୍ମକାଣ୍ଡ ଦ୍ୱାରା କୌଣସି ବିଶେଷ ଫାଇଦା, ମିଳୁ ନଥିବା ଯୋଗୁଁ, ଫେଙ୍ଗସୁଇ ବସ୍ତୁ କିଣି ଘରେ ରଖିବା, ଏକ ଶସ୍ତା ଓ ସୁବିଧା ବୋଲି ସମସ୍ତେ ଭାବୁଛନ୍ତି ।

ଫେଙ୍ଗସୁଇ ବସ୍ତୁ ଦ୍ୱାରା, ଅହେତୁକ ବିଶ୍ୱାସୀ ଲୋକମାନଙ୍କର କିଛି ଫାଇଦା ହେଉ ବା ନହେଉ, ଚାଇନା ଦେଶକୁ ଯଥେଷ୍ଟ ବିଦେଶୀ ମୁଦ୍ରା ପ୍ରାପ୍ତ ହେଉଛି । ଭାରତୀୟ ବ୍ୟବସାୟୀମାନଙ୍କର ଭାଗ୍ୟ ନିଶ୍ଚୟ ବଦଳି ଯାଉଛି । ଗ୍ରାହକର ବସ୍ତୁଗୁଡ଼ିକ ପ୍ରତି ଥିବା ଦୁର୍ବଳତା, ଆଗ୍ରହ ଓ ସମ୍ପନ୍ନତା ଲକ୍ଷ୍ୟ କରି ଦୋକାନୀ, ଶହେ ଟଙ୍କାର ବସ୍ତୁକୁ, ହଜାରେ ଟଙ୍କାରେ ମଧ୍ୟ ବିକ୍ରି କରିପାରୁଛି । କେବଳ ଫେଙ୍ଗସୁଇ ବସ୍ତୁ ଘରେ ରଖିଲେ, ଯଦି ସମସ୍ତଙ୍କର ମାନ, ସମ୍ମାନ ବୃଦ୍ଧି ପାଉଥାନ୍ତା, ତେବେ କାହାରି କୌଣସି ଦୁଃଖ ବା ସମସ୍ୟା ନଥାନ୍ତା । ତର୍କ ନକରି, କେବଳ ଶୁଣା କଥାକୁ ବିଶ୍ୱାସ କରୁଥିବା ଲୋକମାନଙ୍କୁ, କେଉଁ ଶ୍ରେଣୀରେ ଗଣନା କରାଯିବ ? ଅନ୍ଧବିଶ୍ୱାସୀ ଶ୍ରେଣୀରେ ଗଣନା କଲେ ଭୁଲ ହେବକି ?

***********

# ଧର୍ମ ନାମରେ ଧ୍ୱନି ପ୍ରଦୂଷଣ

ଭାରତ ଏକ ସ୍ୱାଧୀନ ଦେଶ ଏବଂ ଏହାର ଅଧିବାସୀ ସ୍ୱାଧୀନ ନାଗରିକ ନାମରେ ପରିଚିତ । ଆମର ସମ୍ବିଧାନ ବ୍ୟକ୍ତି ସ୍ୱାଧୀନତା ନାମରେ, ଅନେକ ମୌଳିକ ଅଧିକାର ପ୍ରଦାନ କରିଛି, ଯାହା ଦ୍ୱାରା ଆମେ ନିଜକୁ, ସ୍ୱାଧୀନ ବୋଲି ଅନୁଭବ କରିପାରିବା । କିନ୍ତୁ ଏହାର ଏକ ବିପରୀତ ଦିଗ ମଧ ଦେଖିବାକୁ ମିଳୁଛି । ତାହା ହେଉଛି - ସ୍ୱାଧୀନତାର ଦୁରୂପଯୋଗ । ସ୍ୱାଧୀନତା ନାମରେ କେତେକ ବ୍ୟକ୍ତି, ସଂସ୍ଥା ଓ ସମ୍ପ୍ରଦାୟ, ଏଭଳି ଅମାନବୀୟ କାର୍ଯ୍ୟ କରୁଛନ୍ତି, ଯାହା ଦ୍ୱାରା ସମାଜର ଅନେକ ଅପୂରଣୀୟ କ୍ଷତି ମଧ ହେଉଛି । ସମାଜର ଆବାଳ ବୃଦ୍ଧ ବନିତା ଅଶାନ୍ତିରେ କାଳ କାଟିବାକୁ ବାଧ ହେଉଛନ୍ତି । ଯଦିଓ ଭାରତୀୟ ସମ୍ବିଧାନ ଆମକୁ ସମ୍ପୂର୍ଣ୍ଣ ଅନୁମତି ଦେଇଛି, କି ଆମେ ଆମର ଆଧାତ୍ମିକ ନୀତି ନିୟମ ଓ କର୍ମକାଣ୍ଡ ସ୍ୱତନ୍ତ୍ର ଭାବେ, ପାଳନ କରିପାରିବା, ତଥାପି ଏହାର ଅର୍ଥ ନୁହେଁ ଯେ ଆଧାତ୍ମିକ ନାମରେ କରାଯାଉଥିବା କର୍ମକାଣ୍ଡ ଓ ଆୟୋଜନ ଦ୍ୱାରା ଅନ୍ୟ ଜନସାଧାରଣଙ୍କୁ ଶାରୀରିକ ଓ ମାନସିକ କଷ୍ଟ ଭୋଗ କରିବାକୁ ବାଧ କରିବା । ବିଡମ୍ବନା ହେଉଛି - ଆମ ଦେଶରେ ଧର୍ମ ନାମରେ, ଏହିଭଳି ଅନେକ ଗତିବିଧି ନିର୍ବାଧରେ ଚାଲିଛି, ଯାହାର କୌଣସି ପ୍ରତିକାର ଅସମ୍ଭବ ଲାଗୁଛି ।

ଉଦାହରଣ ସ୍ୱରୂପ ଆମେ ଦେଖିବା, ପ୍ରତ୍ୟେକ ହିନ୍ଦୁ, ମୁସଲମାନ, ଶିଖ ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ଧର୍ମସ୍ଥଳରେ ଲାଉଡ଼ ସ୍ପିକର ଖଞ୍ଜା ଯାଇଛି । ମନ୍ଦିରମାନଙ୍କରେ ପ୍ରତିଦିନ ସକାଳ ଓ ସନ୍ଧ୍ୟାରେ ଭଜନ, ଜଣାଣ ଆଦି ପ୍ରସାରିତ ହେଉଛି । ମସଜିଦ୍‌ମାନଙ୍କରେ ପ୍ରତିଦିନ ପାଞ୍ଚଥର ଆଜାନ ପ୍ରସାରିତ ହେଉଛି । ଗୁରୁଦ୍ୱାରମାନଙ୍କରେ ସକାଳ ଚାରିଟାରୁ ଗୁରୁଗ୍ରନ୍ଥ ପାଠ ଆରମ୍ଭ ହେଉଛି । ଗୀର୍ଜାଘରମାନଙ୍କରେ ମଧ ସକାଳୁ ପ୍ରାର୍ଥନା ପ୍ରସାରିତ ହେଉଛି । ଏହି ପ୍ରସାରଣ ଶବ୍ଦ ଆଖ ପାଖରେ ରହୁଥିବା ଲୋକମାନଙ୍କୁ କେତେ ଅପ୍ରୀତିକର ଲାଗୁଛି, ତାହା କେବଳ ଅନୁଭବି ହିଁ ଜାଣୁଛି ।

ଲାଉଡ଼ ସ୍ପିକର ଯନ୍ତ୍ରର ଉପଯୋଗ, ବ୍ୟବସାୟିକ ପ୍ରଚାର କିମ୍ବା ପ୍ରଶାସନିକ ସୂଚନା ଦେବାପାଇଁ ହେବାଟା ନ୍ୟାୟସଙ୍ଗତ ଲାଗୁଛି । ସେହିଭଳି କେତେକ ଜନଗହଳି ମେଳା ବା ରାଜନୈତିକ ସଭାର ଆୟୋଜନ ବେଳେ, ଜନସାଧାରଣଙ୍କୁ ମହତ୍ତ୍ୱପୂର୍ଣ୍ଣ ସୂଚନା ଦେବା, ଭିଡ଼କୁ ନିୟନ୍ତ୍ରଣ କରିବା, ବକ୍ତାଙ୍କ ଭାଷଣ ଆଦିକୁ ପ୍ରଚାର କରିବା କାମରେ, ଏହି ଯନ୍ତ୍ରକୁ ବ୍ୟବହାର

କରା ଯାଉଥାଏ । ବସଷ୍ଟାଣ୍ଡ, ରେଳଷ୍ଟେସନ, ଏୟାରପୋର୍ଟ ଆଦି ଜନଗହଳି ସ୍ଥାନରେ, ଆବଶ୍ୟକ ସୂଚନା ଦେବାପାଇଁ, ଲାଉଡ଼ ସ୍ପିକର ଯନ୍ତ୍ରକୁ ବ୍ୟବହାର ଅପରିହାର୍ଯ୍ୟ ଶ୍ରେଣୀରେ ଗଣନା କରାଯିବ । କିନ୍ତୁ ନିୟମିତ ଭାବେ ପ୍ରତିଦିନ, ପାଞ୍ଚଥର କିମ୍ବା ଯେକୌଣସି ସମୟରେ, ଲାଉଡ଼ ସ୍ପିକର ଦ୍ୱାରା ଭଜନ,ପ୍ରବଚନ, ଆଜାନ ଆଦି ବାରମ୍ବାର ପ୍ରସାର କରିବାର ଔଚିତ୍ୟ କଅଣ? ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ବିଚାର କଲେ, ସମସ୍ତେ ଏକମତ ହେବେ ଯେ ଯେଉଁମାନେ ଯେଉଁ ଧର୍ମକୁ କିମ୍ବା ଯେଉଁ ଦେବୀ ଦେବତାଙ୍କୁ ବିଶ୍ୱାସ କରୁଛନ୍ତି, ସେମାନେ ନିୟମିତ ଭାବେ ଧାର୍ମିକ ନୀତି ନିୟମ ମାନି କର୍ମକାଣ୍ଡ ତ କରୁଛନ୍ତି, ପ୍ରତିଦିନ ସେମାନଙ୍କୁ, ମନେ ପକାଇଦେବା କ'ଣ ନିହାତି ଜରୁରୀ? ସତରେ ଯେମିତି, ଭକ୍ତମାନେ କାଳେ ବାଟବଣା ହୋଇ, ଅନ୍ୟ କେଉଁ ଆଡକୁ ଚାଲିଯିବେ ବୋଲି ହୁଏତ ଭୟ ରହୁଥିବାରୁ, ଡ଼ାକବାଜି ଯନ୍ତ୍ର ଦ୍ୱାରା, ସୂଚାଇ ଦିଆ ହେଉଛି, ଆସ ଆସ ତୁମର ଧର୍ମସ୍ଥଳ ଏଇଠି ଅଛି । ଏହା ବି ତ ସମ୍ଭବ ନୁହେଁ ଯେ ଗୋଟିଏ ଧାର୍ମିକ ସମ୍ପ୍ରଦାୟର, ଲୋକ ଅନ୍ୟ ଧାର୍ମିକ ସମ୍ପ୍ରଦାୟର ଭଜନ ବା ପ୍ରବଚନ ଶୁଣି ନିଜର ଧର୍ମ ପରିବର୍ତ୍ତନ କରିଦେବ । ଧର୍ମ ହେଉଛି - ମଣିଷର ବ୍ୟକ୍ତିଗତ ଆସ୍ଥା ଦ୍ୱାରା ପ୍ରଭାବିତ, ଏମିତି ଏକ ସମ୍ବେଦନଶୀଳ ବିଷୟ, ଯାହାକୁ ବିନା ଲାଉଡ଼ ସ୍ପିକରରେ ମଧ୍ୟ ଧର୍ମ ସହିତ ବାନ୍ଧି ରଖୁଛି । ସେ ସ୍ୱଇଚ୍ଛାରେ, ହିଁ ବାନ୍ଧି ହୋଇ ରହିବାକୁ ଚାହୁଁଛି । ଯେଉଁ ବ୍ୟକ୍ତି, ଭକ୍ତି ଭାବନା ଯୋଗୁଁ, ସ୍ୱଇଚ୍ଛାରେ ପ୍ରାତଃକାଳରେ ଉଠି, ନିତ୍ୟକର୍ମ ଶେଷକରି, ମନ୍ଦିର, ମସଜିଦ, ଗୁରୁଦ୍ୱାର, ଗୀର୍ଜାଘର କିମ୍ବା ଅନ୍ୟ ଧର୍ମସ୍ଥଳକୁ ଯାଇ, ପୂଜା କରିବା ଅପେକ୍ଷା ଅନ୍ୟ କିଛି ମହତ୍ତ୍ୱପୂର୍ଣ୍ଣ କାମ କରିବାକୁ ଚାହୁଁଛି, ତାକୁ ଏହି ଧର୍ମସ୍ଥଳରୁ ଶୁଣାଯାଉଥିବା ଭଜନ ବା ପ୍ରବଚନ ସେ ଆଡକୁ ଆକର୍ଷିତ କରିପାରିବ ନାହିଁ । ସେଥିପାଇଁ ପ୍ରଶ୍ନ ଉଠୁଛି - ଲାଉଡ଼ ସ୍ପିକର ଦ୍ୱାରା, ଉଚ୍ଚଧ୍ୱନିରେ ପ୍ରଚାର କରାଯାଉଥିବା ଧାର୍ମିକ ବାଣୀର ଆବଶ୍ୟକତା କାହାପାଇଁ? ଏହାର ଔଚିତ୍ୟ କଅଣ ?

ଏହାର ଉପକାରିତା ଉପରେ ଯଦି ବିଚାର କରାଯାଏ, ଆମେ ସ୍ପଷ୍ଟ ଭାବେ ଅନୁଭବ କରିପାରିବା ଯେ କେବଳ ବ୍ୟକ୍ତିଙ୍କୁ ନୁହେଁ, ସମଗ୍ର ଦେଶକୁ, ଏହି ଧ୍ୱନିପ୍ରଦୂଷଣ ଗ୍ରାସ କରି ରଖିଛି । ଉଦାହରଣତଃ ଘରେ ରହୁଥିବା, ବୟସ୍କ ବ୍ୟକ୍ତି ଏବଂ ରୋଗଶଯ୍ୟାରେ ପଡିଥିବା ବ୍ୟକ୍ତିଙ୍କ, ମାନସିକ ଶାନ୍ତି ନଷ୍ଟ ହେଉଛି । ବୟସ୍କ ଲୋକମାନଙ୍କୁ, ବିଭିନ୍ନ ଆନୁସଙ୍ଗିକ ରୋଗ ଯୋଗୁଁ, ରାତିରେ ସହଜରେ ନିଦ ହୁଏନାହିଁ । ସେମାନେ ପ୍ରାୟ ପାହାନ୍ତିଆ ପ୍ରହର ବେଳକୁ, ଗାଢ଼ ନିଦରେ ଶୋଇଥାନ୍ତି । ସେହି ସମୟରେ ଘରପାଖରେ ଥିବା, କୌଣସି ଧର୍ମସ୍ଥଳରୁ,

ଗର୍ଜନ କରୁଥିବା ଲାଉଡ଼ସ୍ପିକରର କର୍କଶ ଶବ୍ଦରେ ଯଦି ତାଙ୍କର ନିଦ ଭାଙ୍ଗିଯାଏ, ତେବେ ବିଚାରା ଅସହାୟ ବ୍ୟକ୍ତି ଜଣକ, କାହାକୁ ଯାଇ ଅଭିଯୋଗ କରି ପାରିବ ? ଗୋଟିଏ ବୟସ୍କ, ଅସୁସ୍ଥ ଓ ଅସହାୟ ବ୍ୟକ୍ତିଙ୍କ ନିଦ ହରଣ କରିବା ଏବଂ ତାଙ୍କ କାନରେ ନିଜର ଧାର୍ମିକ ଉପଦେଶ, ପ୍ରବଚନ ବା ଭଜନକୁ ଜବରଦସ୍ତି ଠୁସି ଦେବା କ'ଣ ମାନବୀୟ କାର୍ଯ୍ୟ ବୋଲି କହିବା ଉଚିତ ହେବକି ? ଦେଶର ଏକ ବା ଦୁଇ ନୁହେଁ ହଜାର ହଜାର ଧର୍ମସ୍ଥଳମାନଙ୍କ ଦ୍ୱାରା ହେଉଥିବା ଧ୍ୱନି ପ୍ରଦୂଷଣ ବିରୋଧରେ, ଦାବି କରାଯାଉଛି । କିନ୍ତୁ ଶୁଣିବାକୁ କେହିନାହିଁ । ପ୍ରଶାସନିକ ଅଧିକାରୀଗଣ, ଏହା ଏକ ଧାର୍ମିକ ବିଷୟ ସହିତ ଯୋଡି ହୋଇଥିବା ସମ୍ବେଦନଶୀଳ ମାମଲା, ହୋଇଥିବାରୁ କୌଣସି ପ୍ରତିବନ୍ଧ ଲଗାଇବାକୁ ସାହସ କରୁନାହାନ୍ତି ।

ଏହା ବ୍ୟତୀତ ଆମର ଭବିଷ୍ୟତ ବଂଶଧର ଛାତ୍ର ଓ ଛାତ୍ରୀମାନେ, ଅତି ଦୟନୀୟ ଭାବେ ଧ୍ୱନିପ୍ରଦୂଷଣର ଶିକାର ହେଉଛନ୍ତି । ସେମାନଙ୍କର ପାଠ ପଢ଼ିବାର ଅନୁକୂଳ ସମୟ ହେଉଛି, ପ୍ରାତଃକାଳ ଓ ସନ୍ଧ୍ୟା ସମୟ । ଠିକ ସେହିସମୟରେ ଯଦି ଧର୍ମସ୍ଥଳରୁ, ଲାଉଡ଼ ସ୍ପିକରରୁ ଉଚ୍ଚ ଧ୍ୱନିର ଶବ୍ଦ ଆସି, କାନରେ ବାଜିବ, ତେବେ ପାଠ ପଢ଼ାରେ ବ୍ୟାଘାତ ହେବ ହିଁ ହେବ । ଆଜିର ମହଙ୍ଗା ଯୁଗରେ ପିଲାମାନଙ୍କର ଶିକ୍ଷା ପ୍ରାପ୍ତିପାଇଁ ପିତା ମାତାଙ୍କର ଯଥେଷ୍ଟ ଟଙ୍କା ଖର୍ଚ୍ଚ ହେଉଛି । ପିଲାମାନେ ବି ପ୍ରତିଯୋଗିତା ମୂଳକ ବୈଷୟିକ ଶିକ୍ଷା ପ୍ରାପ୍ତକରି, ସଫଳହେବା ପାଇଁ ଦିନ ରାତି ଅକ୍ଳାନ୍ତ ପରିଶ୍ରମ କରୁଛନ୍ତି । ସେମାନଙ୍କୁ ପାଠ ପଢିବାପାଇଁ ଏକ ଶାନ୍ତ ବାତାବରଣ ଯୋଗାଇଦେବା କ'ଣ ଧାର୍ମିକ ସମ୍ପ୍ରଦାୟର କର୍ତ୍ତବ୍ୟ ନୁହେଁ ? କିନ୍ତୁ ପରିତାପର ବିଷୟ ହେଉଛି - ଅଧା ପାଠପଢି, ପୋଥିରେ ଡୋରବାନ୍ଧି, ଧର୍ମନାମରେ, କର୍ତ୍ତବ୍ୟ ବିମୁଖ ହୋଇ ଯେଉଁ ପଣ୍ଡା ପୂଜାରୀଗଣ, ଧର୍ମସ୍ଥଳମାନଙ୍କରେ ବସି ଭଜନ ବା ପ୍ରବଚନ ଶୁଣାଉଛନ୍ତି, ସେମାନେ କେମିତି ବୁଝିବେ ଯେ ଲାଉଡ଼ ସ୍ପିକର ଯନ୍ତ୍ରକୁ ଧର୍ମଶାସ୍ତ୍ର ପଢି କେହି ତିଆରି କରିନାହାନ୍ତି ବରଂ ବିଜ୍ଞାନ ପାଠପଢି ତିଆରି କରିଛନ୍ତି । ସେମାନଙ୍କ ପାଇଁ ତ ଭକ୍ତଙ୍କ ମାନସିକ ଦୋହନ କରି ନିଜପାଇଁ ଧନ ସଂଗ୍ରହ ଏବଂ ଭକ୍ତଙ୍କୁ ମିଥ୍ୟା ମୋକ୍ଷ ପ୍ରାପ୍ତିର ପ୍ରତିଶ୍ରୁତି ଦେବା ହେଉଛି ଅସଲ ଧନ୍ଦା । ପିଲାମାନଙ୍କର ଶିକ୍ଷାରେ ବାଧା ପ୍ରାପ୍ତ ହୋଇ, ଦେଶର ଯେତେ କ୍ଷତି ହେଲେ ବି ସେମାନଙ୍କର ରୋଜଗାରରେ କୌଣସି ଫରକ ପଡିବ ନାହିଁ, ଏକଥା ସେମାନେ ଭଲକରି ଜାଣିଛନ୍ତି । ସେଥିପାଇଁ ଯେଉଁ ପିଲାମାନେ ଏହି ତଥାକଥିତ ଧର୍ମଗୁରୁଙ୍କ, ନିର୍ଦ୍ଧାରିତ ସୀମାରେଖାକୁ ଲଘନ କରି ନିଜର, ପରିବାରର, ସମାଜର ଏବଂ ଦେଶର ଉନ୍ନତି

କରିବାକୁ ଚାହାନ୍ତି, ସେମାନଙ୍କ ମୌଳିକ ସମସ୍ୟା ଉପରେ ଗଭୀର ଭାବେ ଚିନ୍ତା କରିବାପାଇଁ କୌଣସି ଧର୍ମଗୁରୁ ଆଗ୍ରହ ପ୍ରକାଶ କରୁନାହାନ୍ତି । ସେମାନଙ୍କ ମତରେ ଈଶ୍ୱରଙ୍କ ଆଶୀର୍ବାଦ ଏବଂ ଭାଗ୍ୟରେ ଥିଲେ ଛାତ୍ର ନିଶ୍ଚୟ ଉନ୍ନତି କରିବ । ଅନ୍ୟଥା ଯେତେ ପାଠ ପଢିଲେ ମଧ କିଛି ହେବନାହିଁ ।

ଉପରୋକ୍ତ ସମସ୍ତ ଉଦାହରଣରୁ, ଗୋଟିଏ କଥା ପ୍ରମାଣିତ ହେଉଛି, ଯେ ଯଦିଓ ଧର୍ମ କୌଣସି ଭୌତିକ ଉତ୍ପାଦନ ବସ୍ତୁ ନୁହେଁ ଏବଂ ଧର୍ମକୁ ଭୌତିକ ବସ୍ତୁ ଭାବରେ, କାହାକୁ ବିକ୍ରି କରି ହେବନାହିଁ, ତଥାପି ଧର୍ମସ୍ଥଳମାନଙ୍କରେ, ଲାଉଡ୍ ସ୍ପିକର ଲଗାଇ ଯେଉଁ ଭଳି ପ୍ରଚାର କରାଯାଉଛି, ସେଥିରୁ ଲାଗୁଛି ଯେପରି ସମସ୍ତେ ନିଜ ନିଜର ମାଲ ଅଧିକରୁ ଅଧିକ ବିକ୍ରି କରିବା ପାଇଁ ପ୍ରତିଯୋଗିତା କରୁଛନ୍ତି ।

ଏହା ବି ଏକ ଅପ୍ରିୟ ସତକଥା ଯେ ଧର୍ମ ମଧ ଆଜିକାଲି, କୌଣସି ଭୌତିକ ବସ୍ତୁଠାରୁ ଭିନ୍ନ ନୁହେଁ । ଆପଣ ଯେତେ ଅଧିକ ଦାନ ଦକ୍ଷିଣା ଦେଇ ପାରିବେ, ସେତେ ଅଧିକ ପୂଣ୍ୟ ପ୍ରାପ୍ତ କରିପାରିବାର ଗ୍ୟାରେଣ୍ଟି ପାଇଁ ପାରିବେ । ଅନେକ ଭଣ୍ଡ ଧର୍ମବିଶ୍ୱାସୀ ଓ ସ୍ୱାର୍ଥାନ୍ୱେଷୀ ଠକ ବ୍ୟକ୍ତି ବୁଝି ସାରିଲେଣି ଯେ ଆଜି ଧାନ, ଧାରଣା, ତପସ୍ୟା ଓ ପ୍ରାର୍ଥନା ଆଦିର କିଛି ମୂଲ୍ୟ ନାହିଁ । ଅଯଥା ସମୟ ନଷ୍ଟ କରି, ଘଣ୍ଟା ଘଣ୍ଟା ଧରି, ଠାକୁର ପୂଜା କରିବା ଆବଶ୍ୟକ ନାହିଁ । ମନ୍ଦିରକୁ ଯାଅ, ଘଣ୍ଟା ବଜାଅ, ପୂଜାରୀଙ୍କୁ ମନ ମୁତାବକ ଦକ୍ଷିଣା ଦିଅ କାମ ଶେଷ । ସେ ତୁମପାଇଁ ବାକି ସବୁ କାମ କରିଦେବ । ଘରକୁ ଫେରି, ଅପରାଧ ବୋଧରୁ ମୁକ୍ତ ହୋଇ, ନିଜେ କର୍ମରେ ବ୍ୟସ୍ତ ରୁହ । ସେ କର୍ମ - କୁକର୍ମ ହେଉ କି ସୁକର୍ମ, ସେଥିପାଇଁ ଚିନ୍ତା କରିବା ଆବଶ୍ୟକ ନାହିଁ । ଅଧିକରୁ ଅଧିକ ଧନ ଉପାର୍ଜନରେ ମନ ଦିଅ । ହଁ, ମଝିରେ ମଝିରେ ମନ୍ଦିରକୁ ଯାଇ, ପାପ ପ୍ରକ୍ଷାଳନ କରି ଆସିବାକୁ ଭୁଲନାହିଁ । ବାସ ସେତିକିରେ ତୁମର ଇହକାଳ ଓ ପରକାଳ ସୁଧୁରିଯିବ । ଏହିଭଳି ପ୍ରବଞ୍ଚକ, ସ୍ୱାର୍ଥାନ୍ୱେଷୀ ଓ ଠକ ଭକ୍ତଙ୍କ ଯୋଗୁଁ ଧର୍ମସ୍ଥଳ ଓ ସେଠାରେ ଆସ୍ଥାନ ଜମେଇ ବସିଥିବା, କାମଚୋର ଧର୍ମଧ୍ୱଜାଧାରୀମାନଙ୍କ ଜୟ ଜୟକାର ହେଉଛି । ଯେଉଁଠି ଧନର ବାନା ଉଡୁଛି, ସେଇଠି ଧର୍ମ ଏକ ପ୍ରହସନ ହୋଇ ରହି ଯାଉଛି ।

ଆମ ସମାଜ ଓ ଧର୍ମର ଏକ ନୈତିକ ଦାୟିତ୍ୱ ହେଉଛି - ଆମର ବୟସ୍କ, ରୋଗୀ ଏବଂ ଅସହାୟ ବ୍ୟକ୍ତିଙ୍କୁ ଯେତେଦୂର ସମ୍ଭବ ସୁଖ ଓ ଶାନ୍ତିରେ ରଖିବା । ଯଦି ସେତିକି କରିବା ସମ୍ଭବ ନୁହେଁ, ତେବେ ବି ଆମର କୌଣସି ଅଧିକାର ନାହିଁ - ରୋଗରେ ପଡିଥିବା ବ୍ୟକ୍ତି, ନିଦରେ

ଶୋଇଥିବା ବୟସ୍କ ବ୍ୟକ୍ତି ଓ ପାଠ ପଢୁଥିବା ଛାତ୍ର ଛାତ୍ରୀଙ୍କ କାନରେ ଜବରଦସ୍ତି ଭଜନ, ଜଣାଣ ଶୁଣାଇ ସେମାନଙ୍କୁ ମାନସିକ ଭାବେ ଅଶାନ୍ତ କରିବା । ଏହାକୁ ନୈତିକ ନୁହେଁ ବରଂ ଅନୈତିକ ଗତିବିଧି ବୋଲି କୁହାଯିବ । ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କଲେ, ଆମେ ବୁଝି ପାରିବା ଯେ ସକାଳ ଓ ସନ୍ଧ୍ୟାରେ ପ୍ରକୃତି ପ୍ରଦୂଷଣ ମୁକ୍ତ ରହେ । ପ୍ରକୃତି ମାନବ ପାଇଁ ଶାନ୍ତ ବାତାବରଣ ପ୍ରଦାନ କରିଛି କିନ୍ତୁ କିଛି ମାନବ ଧର୍ମ ନାମରେ ଲାଉଡ୍ ସ୍ପିକର ବ୍ୟବହାର କରି ପରିବେଶ ଓ ବାତାବରଣକୁ ଅଶାନ୍ତ କରି ଦେଉଛନ୍ତି ।

ଏଇଠି କିଛି ପ୍ରଶ୍ନ ଉଠୁଛି - ଯେତେବେଳେ ଦୁନିଆରେ ଲାଉଡ୍ ସ୍ପିକର ଉଦ୍ଭାବନ ହୋଇ ନଥିଲା, ସେତେବେଳେ ଲୋକମାନେ କ'ଣ ଧାର୍ମିକ ନଥିଲେ? ସେତେବେଳେ କ'ଣ ଧାର୍ମିକମାନଙ୍କ ସଂଖ୍ୟା କମ ଥିଲା ? ବର୍ତ୍ତମାନ ଜନତାଙ୍କ ମନରେ, ଆଧାତ୍ମିକ ଚେତନା ଓ ଧାର୍ମିକ ଲୋକମାନଙ୍କ ସଂଖ୍ୟା ବୃଦ୍ଧି କରିବାପାଇଁ, ଲାଉଡ୍ ସ୍ପିକର ବ୍ୟବହାର କରିବା ଅତି ଆବଶ୍ୟକ ବୋଲି ହୁଏତ ଧର୍ମ ଗୁରୁମାନେ ଭାବୁଛନ୍ତି । ଧର୍ମସ୍ଥଳମାନଙ୍କରେ ବସିଥିବା ତଥାକଥିତ ସାଧୁ, ସନ୍ୟାସୀ, ପଣ୍ଡା, ପୁରୋହିତମାନଙ୍କୁ ଗମ୍ଭୀରତା ସହିତ ବିଚାର କରିବା ଉଚିତ ଯେ ପିଲା, ବୁଢା ସମସ୍ତଙ୍କୁ ଶାନ୍ତି ଓ ଆରାମ ମିଳିବା ଉଚିତ ।

କେତେକ ପୂଜା ପର୍ବ ସମୟରେ ରାତି ଦଶରୁ ସକାଳ ଛଅ ପର୍ଯ୍ୟନ୍ତ ଲାଉଡ୍ ସ୍ପିକର ବଜେଇବା ପାଇଁ ପ୍ରଶାସନ ପକ୍ଷରୁ ମନା କରାଯାଇଛି । ସେତିକି କ'ଣ ଯଥେଷ୍ଟ ? ପ୍ରତିଦିନ ସକାଳ ଓ ସନ୍ଧ୍ୟାରେ ବାଜୁଥିବା, ଲାଉଡ୍ ସ୍ପିକର ଯୋଗୁଁ ଯେଉଁ ଅଶାନ୍ତି ସୃଷ୍ଟି ହେଉଛି, ତାହା କିପରି ବନ୍ଦ ହେବ ? ଏଥିପାଇଁ କେବଳ ପ୍ରଶାସନ ହିଁ ସାହସର ସହିତ, ପଦକ୍ଷେପ ନେଲେ, ଜନତାଙ୍କୁ ମୋକ୍ଷ ମିଳୁ ବା ନମିଳୁ, କିନ୍ତୁ ମାନସିକ ଶାନ୍ତି ତ ନିଶ୍ଚୟ ମିଳିବ ।

*****~*****

# ସାମାଜିକ ପ୍ରତିବଦ୍ଧତା ଏବଂ ଆମର ଧର୍ମାନ୍ଧତା

ଆଜିକାଲି ଯେକୌଣସି ଖବର କାଗଜ ଓ ପତ୍ରିକା ପଢିବାକୁ ଚାହିଁଲେ, ସେଥିରେ ସବୁଠାରୁ ବେଶୀ ଆଲେଖ୍ୟ ଭ୍ରଷ୍ଟାଚାର, ଅନାଚାର, ଅତ୍ୟାଚାର, ଦୁରାଚାର, ବ୍ୟଭିଚାର ଆଦି ଅନେକ ପ୍ରକାର କୁ-ଆଚାର ବିଷୟରେ ଅତି ଗମ୍ଭୀର ବିଶ୍ଳେଷଣ, ସମ୍ଭାଷଣ ତଥା ଅଭିଯୋଗକରଣ ମନ୍ତବ୍ୟ ପଢିବାକୁ ମିଳିଥାଏ । ସମସ୍ତେ ସମସ୍ୟାଗୁଡିକୁ ବିସ୍ତାର ଭାବରେ ଭାବବିହ୍ୱଳିତ ଭାଷାରେ ବର୍ଣ୍ଣନା କିମ୍ବା ଉପସ୍ଥାପନା କରିଥାନ୍ତି । କିନ୍ତୁ କେହି ବି ସମସ୍ୟାର ସମାଧାନ ଦିଗ ଖୋଜି ପାଉନାହାନ୍ତି ।

ଗୋଟିଏ ଉଦାହରଣ ଦେଖନ୍ତୁ - ନିଜର ଚିକିତ୍ସା କରିବାପାଇଁ, ଆପଣ ଗୋଟିଏ ସରକାରୀ ଡାକ୍ତରଖାନାରେ, ଅନ୍ୟ ରୋଗୀମାନଙ୍କ ସହିତ ଲାଇନରେ ବସିଥିବା ବେଳେ, ରୋଗୀମାନଙ୍କର ମତ ଶୁଣନ୍ତୁ । ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହୋଇ ଯାଉଥିଲେ ବି ଡାକ୍ତର ଆସି ନଥିବା ଦେଖି, ଜଣେ କହୁଛି - ଆଜ୍ଞା ଡାକ୍ତରଙ୍କୁ ନିଜ ଘରେ ହିଁ ତ ଅନେକ ରୋଗୀ ମିଳି ଯାଉଛି, ସେ ଏଠାରେ ମାଗଣାରେ ରୋଗୀ ଦେଖିବାକୁ ଆସିବେ କାହିଁକି?

ଏକଥା ଶୁଣି ଅନ୍ୟ ଜଣେ କହୁଛି - ମାଗଣାରେ ନୁହେଁ ଆଜ୍ଞା, ଗତକାଲି ପରା ମୁଁ ଦୁଇ ଶହ ଟଙ୍କା ଦେଇ, ମୋ ସ୍ତ୍ରୀକୁ ଡାକ୍ତରଖାନରେ ଭର୍ତ୍ତି କରିଛି । ଅନ୍ୟ ଜଣେ କହୁଛି - ଡାକ୍ତର ଆସିଲେ ବି କ'ଣ ହେବ ? ତାଙ୍କ ପଛେ ପଛେ, ଦୁଇ ଚାରିଜଣ ମେଡିକାଲ ରିପ୍ରେଜେଣ୍ଟେଟିଭ ପଶିଯିବେ । ରୋଗୀ ବାହାରେ ଅପେକ୍ଷା କରି ବସି ସଢୁଥିବେ ।

ଆଉ ଜଣେ କହୁଛି - ଆଜିକାଲି ନକଲି ଔଷଧ ତିଆରି କରୁଥିବା, କମ୍ପାନୀଙ୍କ ସଂଖ୍ୟା ଏତେ ବଢି ଗଲାଣି ଯେ, ରୋଗୀ ସତରେ ଠିକ ଔଷଧ ପାଇବ କି ନାହିଁ ସନ୍ଦେହ ? ଶେଷରେ ଜଣେ ଦାର୍ଶନିକ ଭଙ୍ଗୀରେ ନିଜର ମନ୍ତବ୍ୟ ଶୁଣାଉଛି - "ଯାହା ବି ହେଉ, ଉପରଓ୍ୱାଲା ସବୁ ଦେଖୁଛି । ଦିନେ ନା ଦିନେ ସେମାନେ ପାପରଫଳ ପାଇବେ।" ତା'ପରେ ସମସ୍ତେ ଚୁପ ଓ ଶାନ୍ତ ହୋଇଯା'ନ୍ତି । ସମସ୍ତେଭାବନ୍ତି - ହଁ ! ସବୁ ସମସ୍ୟାର ସମାଧାନ ମିଳିଗଲା । କେବଳ ଅପେକ୍ଷା କର ଦେଖିବ କେଉଁ ପାପୀ କେଉଁ ଭଳି ଦଣ୍ଡ ପାଉଛନ୍ତି ?

ଆଉ ଗୋଟିଏ ଉଦାହରଣ ଦେଖିବା - ଆପଣ ଟ୍ରେନରେ ବସି ଯାତ୍ରା କରୁଥିବା ବେଳେ ଯାତ୍ରୀମାନଙ୍କ ମୁହଁରୁ ସରକାର, ପ୍ରଶାସକ, ବ୍ୟବସ୍ଥା, ନେତା, ମନ୍ତ୍ରୀ, ଓ ଟ୍ରେନ

ବିଷୟରେ ଅନେକ ପ୍ରକାର ମନ୍ତବ୍ୟ ଶୁଣିବାକୁ ପାଇବେ । ଆପଣ ନିରବ ରହି, ସେମାନଙ୍କ ବାର୍ତ୍ତାଳାପ ଶୁଣନ୍ତୁ ଏବଂ ନିଜେ ବିଶ୍ଳେଷଣ କରନ୍ତୁ । ସମାଜରେ ବ୍ୟାପକ ଅବ୍ୟବସ୍ଥା, ତଳୁ ଉପରଯାଏଁ ବ୍ୟାପିଥିବା ଭ୍ରଷ୍ଟାଚାର, ଦିନକୁ ଦିନ ବୃଦ୍ଧି ପାଉଥିବା ଦରଦାମ, ନେତା ଓ ମନ୍ତ୍ରୀମାନଙ୍କର ବୃଦ୍ଧି ପାଉଥିବା, କଳାଧନ ଉପରେ ସର୍ବସମ୍ମତି କ୍ରମେ ପ୍ରକାଶ ପାଉଥିବା ଘୋଷଣାରେ କଥା ଶେଷ ହେବ ।

ପ୍ରତିଦିନ ଟିଭିରେ ପ୍ରସାରିତ ହେଉଥିବା, ଖବର ଦେଖିବାକୁ ମିଳୁଛି - ଅମୁକ ନଦୀର ପୋଲ, ନିର୍ମାଣାଧୀନ ହୋଇ ପାଞ୍ଚ ବର୍ଷ ବିତିଗଲାଣି, କାମ ସରୁନାହିଁ । ଅମୁକ ସଡକ, ତିଆରି ହେବାର ଛଅ ମାସ ନଯାଉଣୁ, ବଡ ବଡ଼ ଗାତ ଖୋଳି ହୋଇଗଲାଣି । ଅମୁକ ସ୍କୁଲ କିମ୍ବା ଡାକ୍ତରଖାନାର ଛାତ ଭୁଷୁଡ଼ି ପଡ଼ିଲାଣି ।

ସ୍କୁଲ କଲେଜର, ଶିକ୍ଷିତ ବୁଦ୍ଧିଜୀବୀ ଅଧ୍ୟାପକ ଗୋଷ୍ଠୀ ହେଉ କିମ୍ବା ରାସ୍ତା କଡ଼ର ଚାହା,ପାନ ଦୋକାନରେ, ବସୁଥିବା ସାଧାରଣ ଜନତା ହେଉ, ସବୁଠାରେ ଆଲୋଚନାର ବିଷୟବସ୍ତୁ ଏକାଭଳି - "ଆମ ଦେଶ ରସାତଳକୁ ଯାଉଛି । ଏହି ଦେଶକୁ ଉଦ୍ଧାର କରିବାକୁ କେହି ନାହିଁ ।" ସେମାନଙ୍କ ଭିତରୁ କେହି ନା କେହି ଭବିଷ୍ୟ ଦ୍ରଷ୍ଟା, ନିଜର ଦାର୍ଶନିକ ମତ ଦେବେ - "ଆଜ୍ଞା କଳିଯୁଗ ଚାଲିଛି, ଅପେକ୍ଷା କର, ପାପର ସୀମା ଅତିକ୍ରମ ହେଲେ, ସ୍ୱର୍ଗରୁ କୌଣସି ନା କୌଣସି ଦୈବୀଶକ୍ତି, ଓହ୍ଲାଇ ଆସିବ ଏବଂ ସବୁ ଠିକ କରିଦେବ ।

ସଂକ୍ଷିପ୍ତରେ ଆମେ କହିପାରିବା ଯେ ହଜାର ହଜାର ବର୍ଷରୁ, ଭାରତୀୟ ଚିନ୍ତନ ପଦ୍ଧତି ଓ ଜନତାଙ୍କ ମାନସିକ ସ୍ତରରେ, ଏକ ଆଶ୍ୱାସନା ଭରିରହିଛି - ଦୁଷ୍ଟକୁ ସଂହାର କରି ଶିଷ୍ଟକୁ ଉଦ୍ଧାର କରିବାପାଇଁ ସ୍ୱର୍ଗରୁ ତଥାକଥିତ, ଦେବପୁରୁଷ ଅବତାର ନେଇ ଆସିବେ । ଏଇଠି ପ୍ରଶ୍ନ ଉଠୁଛି - କେଉଁମାନେ ପ୍ରକୃତରେ ଶିଷ୍ଟ ଏବଂ ସେମାନଙ୍କ ସଂଖ୍ୟା ଦୁଷ୍ଟମାନଙ୍କ, ଅପେକ୍ଷା ବେଶୀ ନା କମ ?

ଆମ ଚାରିପାଖରେ, ଯାହା ଘଟଣା ବା ଅଘଟଣ ଘଟୁଛି, ସେଥିପାଇଁ ଆମେ ପ୍ରତ୍ୟକ୍ଷଭାବେରେ ସଚେତନ ନୁହେଁ କିମ୍ବା କିଛି ପ୍ରତିକାରର ପନ୍ଥା ଚିନ୍ତା ବି କରୁନାହୁଁ । ଆମେ କୌଣସି ଦାୟିତ୍ୱ ବୋଧ, ଅନୁଭବ ମଧ୍ୟ କରୁନାହୁଁ । ତଥାପି ଆମେ ନିଜକୁ, ଶିଷ୍ଟ ଶ୍ରେଣୀରେ ଗଣନା କରିବାକୁ ଚାହୁଁଛୁ ।

ହିନ୍ଦୁ ଧର୍ମଗୁରୁମାନେ, ପ୍ରବଚନ ଦେଇ କୁହନ୍ତି - ଏଇ ଦେଶ, ଏଇ ସମାଜ, ଆଦିମ କାଳରୁ ନିଜର ଶୈଳୀରେ ହିଁ ଚାଲି ଆସିଛି, ଆଗକୁ ମଧ୍ୟ ଏମିତି ଚାଲିବ । ଏହାକୁ କୌଣସି ଗନ୍ତବ୍ୟସ୍ଥଳ ବା ଲକ୍ଷ୍ୟ ପର୍ଯ୍ୟନ୍ତ ନେଇଯିବାର କ୍ଷମତା ମଣିଷର ନାହିଁ । ପ୍ରକୃତିର ନିୟମ ଭଳି. ସମାଜର ବି ଶାଶ୍ୱତ ନିୟମ ରହିଛି । ଆମେ ତୁଚ୍ଛ ମଣିଷ ସେହି ନିୟମରେ ହସ୍ତକ୍ଷେପ କରିବା କାହିଁକି ?"

ଏହି ସଂସାରକୁ ସୃଷ୍ଟି କରିଥିବା, ଈଶ୍ୱର ହିଁ ଦିଶା ନିର୍ଦ୍ଦେଶ କରିବେ । ଆମେ ତ ନିମିତ୍ତ ମାତ୍ର । ଏହି ଦର୍ଶନ ଗୀତାରେ ବର୍ଣ୍ଣନା କରାଯାଇଛି । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଉପଦେଶ ଦେଇ କହିଛନ୍ତି – "ହେ, ଅର୍ଜୁନ, ଏହି ସଂସାରର ସମସ୍ତ କର୍ମ ସ୍ୱତଃ ହେଉଛି, କିନ୍ତୁ ତୁମେ ଭାବୁଛ - "ମୁଁ କର୍ମ କରୁଛି ।" ଯୁଦ୍ଧରେ କାହାକୁ ହତ୍ୟା କଲେ, ତୁମେ ହିଁ ଦୋଷୀ ହେବ ବୋଲି ଭାବୁଛ । କିନ୍ତୁ ମୁଁ ସେମାନଙ୍କୁ ପ୍ରଥମରୁ ମାରିସାରିଛି । ତେଣୁ ତୁମେ ହତ୍ୟାକାରୀ ନୁହଁ, ନିମିତ୍ତ ମାତ୍ର । ତୁମେ ଜଣେ ନିରପକ୍ଷ ସାକ୍ଷୀ ମାତ୍ର ।"

ଏହି ନିରପେକ୍ଷ ସାକ୍ଷୀଭାବ, ସମସ୍ତ ଭାରତୀୟ ଆଧ୍ୟାତ୍ମିକତାର, ମୂଳ ସନ୍ଦେଶ ଅଟେ । ଭୌତିକ ଜଗତ ପ୍ରତି, ଉଦାସୀନ ହୋଇ, ଭାବ ଜଗତ ପ୍ରତି ଆଗ୍ରହ ରଖିବା, କର୍ମ ପ୍ରତି ଅନାସକ୍ତ ରହି, ଆଧ୍ୟାତ୍ମିକତା ପ୍ରତି ଆକର୍ଷିତ ହେବା, ବାସ୍ତବିକ ଜୀବନ ପ୍ରତି ବୈରାଗ୍ୟ ରଖି, କାଳ୍ପନିକ ସ୍ୱର୍ଗ ପ୍ରତି ଅନୁରାଗ ରଖିବା, ସମସ୍ୟାର ସମାଧାନ ନ ଖୋଜି, ହାତ ଯୋଡି ତଟସ୍ଥ ବା ନିରପେକ୍ଷ ରହିବା ହିଁ ଆମପାଇଁ ବଟୀଖୁଣ୍ଟ ହୋଇଛି । ଅନ୍ତିମ ଲକ୍ଷ୍ୟ ହେଉଛି – "ତଥାକଥିତ ନିର୍ବିକଳ୍ପ ସମାଧି ।"

ହଜାର ହଜାର ବର୍ଷରୁ ଏହି ଅନାଶକ୍ତ ଓ ନିରପେକ୍ଷ ଭାବକୁ ହିଁ ସମସ୍ତେ ପାଳନ କରି ଆସିଛନ୍ତି । ପୁରୁଣା କାଳର ଭାରତୀୟ ତଥାକଥିତ ବୁଦ୍ଧିଆ ଲୋକମାନେ, ମାତ୍ର ଦୁଇଟି ପଥକୁ ସହଜ ଓ ସୁଗମ ବୋଲି ଭାବୁଥିଲେ । ପ୍ରଥମ ହେଉଛି – "ଘର ଓ ପରିବାରର ଦାୟିତ୍ୱରୁ ମୁକ୍ତହୋଇ, ବୈରାଗୀ ସାଜି, ବଣ ଜଙ୍ଗଲକୁ ଚାଲିଯାଅ ।" ଦ୍ୱିତୀୟଟି ହେଉଛି – "ତ୍ୟାଗ ନକରି, ଭୋଗ କରିବାପାଇଁ କୌଣସି ରାଜା ବା ଶାସକମାନଙ୍କ ଆନୁଗତ୍ୟ ସ୍ୱୀକାର କରିନିଅ । ଶାସକବର୍ଗଙ୍କ ଗୋଲାମ ହୋଇ, ସ୍ତୁତି ଗାନକରି, ସମସ୍ତ ପ୍ରକାର ଭୌତିକ ସାଧନ ପାଇ, ସୁଖରେ ଜୀବନ ଅତିବାହିତ କରିପାରିବ ।" ଏହି ଦୁଇଟି ମାର୍ଗ ସମାଜ ପ୍ରତି ଉଦାସୀନ ଏବଂ ନିଜର ସ୍ୱାର୍ଥନ୍ୱେଷୀ ମନୋବୃତ୍ତିର ପରିଚାୟକ । ଏଥିରେ ସାମାଜିକ ପ୍ରତିବଦ୍ଧତା ଆଦୌ ନାହିଁ ।

ବୁଦ୍ଧିଆ ଲୋକମାନଙ୍କୁ ଦେଖି, ସାଧାରଣ ଜନତା ମଧ୍ୟ ଏହି ଦୁଇଟି ମାର୍ଗରେ ଚାଲିଛନ୍ତି । ସେମାନେ ହୁଏତ ଭଜନ କରୁଛନ୍ତି କିମ୍ବା ଭୋଜନ କରୁଛନ୍ତି ।

ବୈଦିକ ଯୁଗରୁ ଆଜି ପର୍ଯ୍ୟନ୍ତ, ଭାରତରେ କୌଣସି ସାମାଜିକ କ୍ରାନ୍ତି ହୋଇନାହିଁ । ମଝିରେ ମଝିରେ ଯଦିଓ କେବଳ ସତ୍ତା ପରିବର୍ତ୍ତନ ହୋଇଛି କିନ୍ତୁ ଆଧମିକତାରେ ସୁଧାର ଆଣିବାପାଇଁ କାହାରି ଦ୍ୱାରା ଉଲ୍ଲେଖନୀୟ ପ୍ରୟାସ କରାଯାଇନାହିଁ । ଚାର୍ବାକଙ୍କ ଲୋକାୟତ ମତ, ସମୟର ଗର୍ଭରେ ଲୀନ ହୋଇଗଲା । ଗୌତମ ବୁଦ୍ଧଙ୍କ ମୂଳନୀତି ଓ ଆଦର୍ଶ ମଧ୍ୟ ହଜିଗଲା । ମୂର୍ତ୍ତି ପୂଜାକୁ ବିରୋଧ କରୁଥିବା ବୁଦ୍ଧଙ୍କ ମୂର୍ତ୍ତି, ଆଜି ବିଭିନ୍ନ ବୌଦ୍ଧ ବିହାରରେ ପୂଜା ପାଉଛି । ଆଧାମିକତାର ଅପରିବର୍ତ୍ତନୀୟ ସ୍ଥିତିକୁ ନେଇ, ଅନେକ ବ୍ୟକ୍ତି ଗର୍ବ ଅନୁଭବ କରୁଛନ୍ତି । ସେମାନଙ୍କର ତର୍କ ହେଉଛି – "ଯେହେତୁ ଆଧମିକତା ହିଁ ସତ୍ୟ, ତେଣୁ ପରିବର୍ତ୍ତନ ହୋଇ ପାରିବନାହିଁ ।" ଦୁନିଆର ସମସ୍ତ କ୍ଷେତ୍ରରେ ଉଲ୍ଲେଖନୀୟ ପରିବର୍ତ୍ତନ ଘଟିଥିଲେ ବି ଆଧାମିକ ବିଚାରଧାରାରେ ବିଶେଷ ପରିବର୍ତ୍ତନ ଘଟିନାହିଁ । ଯଦିବା କେଉଁଠି କୌଣସି ବୁଦ୍ଧିବାଦୀ ବା ହେତୁବାଦୀ ପ୍ରଶ୍ନ କରିବାକୁ ଦୁଃସାହସ କରୁଛନ୍ତି, ତେବେ ତାଙ୍କୁ ମୌଳବାଦୀମାନଙ୍କ ଦ୍ୱାରା ଭୀଷଣ ବିରୋଧର ସମ୍ମୁଖୀନ ହେବାକୁ ପଡିଛି । ଅତୀତରେ ଏହି କାରଣରୁ ଦୁନିଆର ଅନେକ ପ୍ରତିଭାଶାଳୀ ବୈଜ୍ଞାନିକ, ଦାର୍ଶନିକ, ବୁଦ୍ଧିଜୀବୀ ବ୍ୟକ୍ତିମାନଙ୍କ ଉପରେ ଅମାନୁଷିକ ଭାବେ ଅତ୍ୟାଚାର ହୋଇଛି ।

ବିଶ୍ୱ ସଭ୍ୟତାର ଗତିଶୀଳତାକୁ ନିରୀକ୍ଷଣ କରି, ଏହାର କାରଣକୁ ବୁଝି ପାରୁଥିବା, ବୁଦ୍ଧିଜୀବୀମାନେ ଭଲ ଭାବେ ଜାଣି ପାରୁଛନ୍ତି, ଯେ ଧର୍ମୀୟ ସ୍ଥିରତାର ଅର୍ଥ ହେଉଛି ନିର୍ଜୀବ ସମାଜର ଲକ୍ଷଣ । ପରିତାପର ବିଷୟ ହେଉଛି, ଯେ ଭାରତୀୟ ଧର୍ମୀୟ ମତ ଭିତରେ ରହିଥିବା, ଅନେକ ବିଭିଧତା ଏବଂ ମତପାର୍ଥକ୍ୟକୁ ଦୂର କରି, ମାନବିକତାକୁ ସ୍ଥାପନ କରିବା ପାଇଁ, ଯିଏ ବି ଚେଷ୍ଟା କରିଛି, ପରବର୍ତ୍ତୀ କାଳରେ, ତାଙ୍କର ମତକୁ ଅନ୍ୟ ଏକ ଧର୍ମ ସମ୍ପ୍ରଦାୟର, ମତ ସହିତ ଯୋଡି ଦିଆଯାଇଛି । କାରଣ ତାଙ୍କର ସମର୍ଥକ ଗୋଷ୍ଠୀ ତାଙ୍କୁ ଜଣେ ସମାଜ ସୁଧାରକ ନମାନି, ଜଣେ ଅବତାର ପୁରୁଷ ବୋଲି ମାନିଲେ । ଏହିଭଳି ଆମ ଦେଶରେ, ନୂଆ ନୂଆ ଧର୍ମ ସମ୍ପ୍ରଦାୟର ସୃଷ୍ଟି ହୋଇଛି । ଆଜି ଆମ ଦେଶରେ, ଏହି ଭିନ୍ନତା ଯୋଗୁଁ ଧର୍ମନିରପେକ୍ଷ ଭାବ, କେବଳ ଦେଖାଇବା ପାଇଁ ରହିଛି । ଭିତରେ ଭିତରେ ପ୍ରତ୍ୟେକ ସମ୍ପ୍ରଦାୟ, ପରସ୍ପରକୁ ଈର୍ଷା ଓ ଘୃଣା କରୁଛନ୍ତି ।

ସାମାଜିକ ପ୍ରତିବଦ୍ଧତାର ଅଭାବ, ବ୍ୟକ୍ତିକୁ ସ୍ୱାର୍ଥକୈନ୍ଦ୍ରିକ ଏବଂ ଅଳସୁଆ କରିବା ସହିତ, ସମାଜକୁ ବି ନିର୍ଜୀବ ଓ ସ୍ଥାଣୁ କରିଦେଉଛି । ପ୍ରତ୍ୟେକ ନାଗରିକ, ସମାଜର ଭଲମନ୍ଦ ପ୍ରତି ଯଦି ଉତ୍ତରଦାୟୀ, ବୋଲି ଅନୁଭବ କରନ୍ତି, ତେବେ ହିଁ ସମାଜର କିଛି ନୂଆ ଉପଯର ଆବିଷ୍କାର ହୋଇପାରିବ । ତା'ଉପରେ ପରୀକ୍ଷଣ ଓ ଗବେଷଣା ହୋଇ ସମାଜକୁ ନୂତନ ଜୀବନଶୈଳୀ ମିଳିପାରିବ ।

ଗୋଟିଏ ଉଦାହରଣ ଦେଖନ୍ତୁ - ଶହ ଶହ ବର୍ଷ ଧରି ମ୍ୟାଲେରିଆ ରୋଗ, ଭାରତ ଏବଂ ଅନ୍ୟ ଉଷ୍ଣଜଳବାୟୁ ଦେଶମାନଙ୍କରେ, ବ୍ୟାପକ ରୂପେ ରହିଛି । ଆମ ଦେଶରେ ଆଧୁନିକ ଶିକ୍ଷା ପ୍ରାପ୍ତ ଡାକ୍ତରମାନଙ୍କର ଅଭାବ ନାହିଁ । କିନ୍ତୁ କେହି ମ୍ୟାଲେରିଆ ରୋଗର କାରଣ ଓ ନିରାକରଣ ଖୋଜିବାକୁ ପ୍ରୟାସ କରି ନଥିଲେ । ଜଣେ ଇଂରେଜ ଡାକ୍ତର "ସାର ରୋନାଲଡ ରସ" ଭାରତକୁ ଆସି ରୋଗୀ ସେବା କରୁଥିବା ବେଳେ ଏହି ରୋଗର ଭୟାବହ ପରିଣାମ ଦେଖି, ତା'ର କାରଣ ଖୋଜିବା ପାଇଁ ଲାଗି ପଡିଲେ । ଦୀର୍ଘ ପାଞ୍ଚ ବର୍ଷ ଧରି, ପ୍ରତିଦିନ ଅଠର ଘଣ୍ଟା ପରିଶ୍ରମ କରି, ଶେଷରେ ସେ "ଆନୋଫିଲିସ" ମଶାର ଆମାଶୟ ଭିତରେ ଲୁଚି ରହୁଥିବା, ମ୍ୟାଲେରିଆ ଜୀବାଣୁର ସନ୍ଧାନ ପାଇଲେ । ତା'ପରେ ସେହି ରୋଗର ଉପଯୁକ୍ତ ଚିକିତ୍ସା ଓ ପ୍ରତିଷେଧକ ବ୍ୟବସ୍ଥା ମଧ୍ୟ ହୋଇପାରିଲା ।

ଭାଗ୍ୟବାଦ ଓ ତଥାକଥିତ ଅବତାରବାଦ ଭଳି ଭିତିହୀନ ବିଶ୍ୱାସ ଯୋଗୁଁ, ଆଜି ବି ଭାରତ ବୈଜ୍ଞାନିକ ଆବିଷ୍କାର କିମ୍ବା ଉଦ୍ଭାବନ କ୍ଷେତ୍ରରେ ପଛରେ ପଡିଛି । ମାନବଜାତିର ବିଜ୍ଞାନ ଭଣ୍ଡାରକୁ କୌଣସି ମୌଳିକ ଏବଂ ମହତ୍ତ୍ୱପୂର୍ଣ୍ଣ ତଥ୍ୟ ଦେଇପାରିନାହିଁ ଭାରତ । ଧର୍ମଶାସ୍ତ୍ରମାନଙ୍କରେ ଲିଖିତ, ତଥ୍ୟକୁ ମାନବଜାତିର ହିତପାଇଁ, ଜଗତକୁ ଆମେ ଦେଇଛୁ ବୋଲି ଯେଉଁ ଦାବି କରାଯାଉଛି, ତାହା ସର୍ବତଭାବେ ସମ୍ମତି ପାଉନାହିଁ । କାରଣ ଧର୍ମଶାସ୍ତ୍ରମାନଙ୍କରେ ଥିବା ପରସ୍ପର ବିରୋଧୀ ମତକୁ, କିଏ ବା କିପରି ଗ୍ରହଣ କରିବ ?

ଆମେ ଆମର ସାମାଜିକ ସମସ୍ୟାର ସମାଧାନ ପାଇଁ, ସରକାରକୁ ଦାୟୀ କରୁଛୁ । ସରକାର କିଛି ନକଲେ, ନିରୁପାୟ ହୋଇ ତଥାକଥିତ ଭଗବାନଙ୍କୁ ପ୍ରାର୍ଥନା କରୁଛୁ । କିନ୍ତୁ ନିଜେ କୌଣସି ଦାୟିତ୍ୱ ତୁଲାଇବାକୁ ଇଚ୍ଛା ରଖୁନାହୁଁ । ଆସନ୍ତୁ, ଆମେ ପଳାୟନବାଦୀ, ସ୍ୱାର୍ଥକୈନ୍ଦ୍ରିକ, ମନୋବୃତ୍ତି ତ୍ୟାଗ କରି, କିଛି ନୂଆ ଉପାୟ ଚିନ୍ତା କରିବା, ଯାହା ଫଳରେ ଗୋଟିଏ ନୂଆ ସଭ୍ୟ, ସୁସଂସ୍କୃତ ଓ ସ୍ୱଚ୍ଛ ସମାଜର ଗଠନ ହୋଇପାରିବ ।

********

# ବାସ୍ତୁ ଶାସ୍ତ୍ରରେ ବୃକ୍ଷର ଭ୍ରାମକ ତର୍ଜମା

ବୃକ୍ଷ ଓ ଲତା ପ୍ରକୃତିର ଅବଦାନ । ଏଗୁଡ଼ିକ କେବଳ ମାନବ ଜାତିକୁ ନୁହେଁ,ସମଗ୍ର ଜୀବଜଗତକୁ ବଞ୍ଚି ରହିବାରେ ସାହାଯ୍ୟ କରୁଛି । ଗଛ ଜୀବଜଗତକୁ ଖାଦ୍ୟ, ସ୍ୱାସ୍ଥ୍ୟ ଓ ସୁରକ୍ଷା ପ୍ରଦାନ କରୁଥିବାରୁ, ମାନବ ଜାତି କୃତଜ୍ଞତା ଜଣାଇ ପୂଜା ଓ ଆରାଧନା କରୁଥିଲା । ଅନ୍ୟ କୌଣସି ଜାତିର ପ୍ରାଣୀ ଏ ସବୁ କରନ୍ତି ନାହିଁ । ଯଦିଓ ସମସ୍ତ ଜୀବଜଗତ ବୃକ୍ଷଠାରୁ ନିଜ ନିଜର ଆବଶ୍ୟକତା ଅନୁସାରେ ଫାଇଦା ପାଉଛନ୍ତି । ମଣିଷ ନିଜର ସ୍ୱାର୍ଥ ସାଧନରେ ସାହାଯ୍ୟ କରୁଥିବା ଯେ କୌଣସି ବ୍ୟକ୍ତି ବା ଶକ୍ତି ଆଗରେ କୃତଜ୍ଞତା ଜ୍ଞାପନ କରିବା ଅସଙ୍ଗତ ନୁହେଁ ବରଂ ସେହି ବ୍ୟକ୍ତିଙ୍କ ଏକ ବିନମ୍ର ଭାବକୁ ପ୍ରମାଣିତ କରୁଛି ।

ଏଇଠି ଆମେ ମଣିଷ ମନର ଭାବପ୍ରବଣତାକୁ ଟିକିଏ ବାସ୍ତବିକ ଦୃଷ୍ଟିକୋଣରୁ ବିଚାର କରିବା । ଧରନ୍ତୁ - ଜଣେ ବ୍ୟକ୍ତି ଆକସ୍ମିକ ଦୁର୍ଘଟଣା ଯୋଗୁଁ ଆଘାତ ପାଇ, ରାସ୍ତାକଡ଼ରେ ଅସହାୟ ହୋଇ ପଡିଛନ୍ତି । ତାଙ୍କୁ କେହି ସହୃଦୟ ବ୍ୟକ୍ତି, ଡାକ୍ତରଖାନାକୁ ଉଠାଇ ନେଇଗଲେ । ସେଠାରେ ଜଣେ ସହୃଦୟ ଡାକ୍ତର, ତୁରନ୍ତ ଚିକିତ୍ସା ଆରମ୍ଭ କରିଦେଲେ । ଯାହା ଫଳରେ ଲୋକଟି ବଞ୍ଚିଗଲା ।

ତା'ପରର ଦୃଶ୍ୟ ହେଉଛି ସେହି ଅନ୍ଧବିଶ୍ୱାସୀ ଲୋକଟିର ମନସ୍ତତ୍ତ୍ୱ । ସେ ଜଣେ ସଚ୍ଚା 'କାଳୀମାତା' ଭକ୍ତ । ତାଙ୍କର ତଥାକଥିତ ଇଷ୍ଟ ଦେବୀଙ୍କୁ, ସେ ଦୁନିଆର ସବୁଠାରୁ ମହାନ ଶକ୍ତିଶାଳୀ ଓ ଦୟାବତୀ ଦେବୀ ବୋଲି ଭାବୁଛନ୍ତି ।

ଦୁର୍ଘଟଣା ଗ୍ରସ୍ତ ଆହତ ବ୍ୟକ୍ତିଙ୍କୁ, ଜଣେ ବ୍ୟକ୍ତି ତୁରନ୍ତ ନେଇ ଡାକ୍ତରଖାନାରେ ଭର୍ତ୍ତି କଲେ । ସେଠିକା ଡାକ୍ତର ଉଚିତ ଚିକିତ୍ସା କରି ବଞ୍ଚାଇଲେ । କିନ୍ତୁ ଦେବୀ ଭକ୍ତଙ୍କ ମନରେ, ସେହି ଦୁଇ ଜଣଙ୍କ ପାଇଁ କେବଳ ସାଧାରଣ ଧନ୍ୟବାଦ ଏବଂ ଦେବୀଙ୍କ ପ୍ରତି ଗଭୀର କୃତଜ୍ଞତା ପ୍ରକଟ କରିବେ । ତା'ର ଚିକିତ୍ସା ଖର୍ଚ୍ଚକୁ ନେଇ ଡାକ୍ତରଙ୍କ ସାଙ୍ଗରେ ଦର ଦାମ ମଧ ଚାଲିବ କିନ୍ତୁ ଦେବୀଙ୍କ ମନ୍ଦିରରେ ଅକୁଣ୍ଠ ଚିତ୍ତରେ ପୂଜା ଆଦି କର୍ମପାଇଁ, ଯଥେଷ୍ଟ ଧନ ଖର୍ଚ୍ଚ କରିବ । ଦୁର୍ଘଟଣା ସ୍ଥଳରୁ ଆଣିଥିବା ଲୋକକୁ, ଖୋଜି କୃତଜ୍ଞ ପ୍ରକଟ କରିବା ଆବଶ୍ୟକ ନାହିଁ । ଏ ସବୁର କାରଣ ପଚାରିଲେ ସେ ଉତ୍ତର ଦେବେ - "ସବୁ ମୋର ଆରାଧ୍ୟା ଦେବୀଙ୍କ କୃପା । ସେ ହିଁ ସେଦିନ ସେହି ଲୋକକୁ, ମୋତେ ଆଣିବା ପାଇଁ ପଠାଇଥିଲେ । ଦେବୀ ଡାକ୍ତରଙ୍କୁ ନିର୍ଦ୍ଦେଶ

ଦେଲେ ମୋର ଚିକିତ୍ସା କରିବା ପାଇଁ ।" ତେଣୁ ଏମାନେ ହେଉଛନ୍ତି ନିମିତ୍ତ ମାତ୍ର । ମୋତେ ବଞ୍ଚାଇବା ଶକ୍ତି ହେଉଛି ଦେବୀମାତାଙ୍କର ।"

ଏଇଠି ଦେଖନ୍ତୁ - ରୋଗୀଟି ପ୍ରତି ଯେଉଁ ମାନବିକ ଭାବପ୍ରବଣତା, ସାହାଯ୍ୟ କରିଥିବା ବ୍ୟକ୍ତି ଓ ଡାକ୍ତରଙ୍କ ଥିଲା, ସେହିଭଳି ଭାବପ୍ରବଣତା ରୋଗୀର ନାହିଁ । ଭାବପ୍ରବଣତା ଅଛି ସେହି କାଳ୍ପନିକ ଶକ୍ତି ଉପରେ, ଯାହାକୁ ସେ କେବେ ଦେଖି ନାହିଁ କି ଅନୁଭବ କରିନାହିଁ । ସେହି ଲୋକର ଯଦି ତର୍କବୁଦ୍ଧି ରହିଥା'ନ୍ତା, ତେବେ ସେ ସେହି ଦୁଇଜଣ ସହୃଦୟ ବ୍ୟକ୍ତିଙ୍କୁ, ହିଁ କୃତଜ୍ଞତା ଜଣାଇବା ସହିତ ସେମାନଙ୍କ ଉପଯୁକ୍ତ ପାରିଶ୍ରମିକ ଦେଇଥା'ନ୍ତା । କିନ୍ତୁ ସେ ଏକ ଅହେତୁକ ବିଶ୍ୱାସୀ ହୋଇଥିବାରୁ ଅଯଥା ଧାର୍ମିକ କର୍ମକାଣ୍ଡ କରି, ପୂଜାରୀମାନଙ୍କୁ ଦାନ,ଦକ୍ଷିଣା ଦେଇ ତଥାକଥିତ ଦେବୀ ଉଦ୍ଦେଶ୍ୟରେ କୃତଜ୍ଞତା ପ୍ରକାଶ କରିବେ ।

ସେ ବରଂ ତଥାକଥିତ ଭଗବାନଙ୍କୁ ପ୍ରଶ୍ନ କରିବା ଉଚିତ ଯେ ମୋତେ ବଞ୍ଚେଇବା ପାଇଁ, ଏତେ ଡ୍ରାମା କରିବା କ'ଣ ଦରକାର ଥିଲା ? ମୋତେ ଦୁର୍ଘଟଣା ଗ୍ରସ୍ତ କଲ କାହିଁକି ? ମୋତେ ଶାରୀରିକ, ମାନସିକ ଓ ଆର୍ଥିକ ଦଣ୍ଡ ଦେଲ କାହିଁକି ? ଏହାର ଉତ୍ତର ଦେଇ, ଧର୍ମଗୁରୁମାନେ କୁହନ୍ତି – "ମଣିଷ ଭଗବାନଙ୍କୁ ଭୁଲି ଯିବ ବୋଲି, ସେ ବେଳେବେଳେ ଏମିତି ଦଣ୍ଡ ବିଧାନ କରିଥାନ୍ତି । ଏହା ଏକ ବିଚିତ୍ର ବିଧାନ ନୁହେଁକି ?

ଉପରୋକ୍ତ ଉଦାହରଣ ଦେବାର ଉଦ୍ଦେଶ୍ୟ ହେଉଛି - ମଣିଷର ସମ୍ବେଦନଶୀଳ ବ୍ୟକ୍ତି ଓ ଶକ୍ତି ପ୍ରତି କୃତଜ୍ଞତା ପ୍ରକାଶରେ ଥିବା ପ୍ରଭେଦକୁ ବୁଝିବା । ବ୍ୟକ୍ତିକୁ ଧନ୍ୟବାଦ ନଦେଲେ ସେ ହୁଏତ ତୁମକୁ ଆଉ କେବେ ସାହାଯ୍ୟ କରିବାକୁ ଆଗ୍ରହ ପ୍ରକାଶ କରିବ ନାହିଁ । କିନ୍ତୁ ଶକ୍ତିକୁ ଧନ୍ୟବାଦ ନଦେଲେ ମଧ୍ୟ ସେ ତା'ର ପ୍ରାକୃତିକ ଧର୍ମ କରିବ ହିଁ କରିବ । ସୂର୍ଯ୍ୟ, ବାୟୁ, ଜଳର ଶକ୍ତି ସମସ୍ତଙ୍କ ପାଇଁ ସମାନ ଭାବେ ଉପଲବ୍ଧ ରହିବ ।

ତଥାକଥିତ ବାସ୍ତୁଶାସ୍ତ୍ରରେ ବୃକ୍ଷ ଓ ଲତାମାନଙ୍କରେ, ଅନେକ ଐଶ୍ୱରୀୟ ଶକ୍ତି ରହିଛି ଏବଂ ଏମାନଙ୍କୁ ପୂଜା ନକଲେ ମଣିଷର ଅନେକ କ୍ଷତି ହେବ ବୋଲି ଉଲ୍ଲେଖ ଅଛି । ଏହା ସମ୍ପୂର୍ଣ୍ଣ ଅହେତୁକ ବିଶ୍ୱାସ ଓ ଅବୈଜ୍ଞାନିକ ବିଚାର । ବାସ୍ତୁଶାସ୍ତ୍ରୀମାନଙ୍କ ମତରେ କେତେକ ଗଛରେ ଦେବୀ ଦେବତା ବାସ କରୁଛନ୍ତି, ଆଉ କେତେକ ଗଛରେ ରାକ୍ଷସ ବାସ କରନ୍ତି । ତେଣୁ ନିଜର ଘର ଆଖ ପାଖରେ କେଉଁ ଗଛ, କେଉଁ ଦିଗରେ ରହିଲେ ଶୁଭ ଓ ଅଶୁଭ ହେବ କହିଥା'ନ୍ତି । ବର , ଓସ୍ତ, ବେଲ, ନିମ, ନଡ଼ିଆ, ଆମ୍ବ, କଦଳୀ ଓ ତୁଳସୀ ଆଦି ଗଛରେ

ଦେବତା ବାସ କରନ୍ତି । ଘରେ ମନିପ୍ଲାଣ୍ଟ ଲଗାଇଲେ ଧନ ବୃଦ୍ଧି ହୁଏ । ସ୍କନ୍ଦପୁରାଣରେ ଲେଖା ଅଛି - "ଓସ୍ତ ଗଛକୁ ପୂଜା କଲେ ପୁତ୍ର ପ୍ରାପ୍ତ ହେବ, କାରଣ ଓସ୍ତ ଗଛକୁ ବିଷ୍ଣୁଙ୍କ ପ୍ରତୀକ ବୋଲି ବର୍ଣ୍ଣନା କରାଯାଇଛି । ଓସ୍ତ ଗଛକୁ ହାଣିବା ମାନେ ବ୍ରାହ୍ମଣକୁ ହାଣିବା ଭଳି ପାପ ହେବ । ଯିଏ ହାଣିବ, ସେ ସିଧା ନର୍କକୁ ଯିବ ।"

ବାସ୍ତୁଶାସ୍ତ୍ରର ଗୋଟିଏ ଗ୍ରନ୍ଥ "ବିଶ୍ୱକର୍ମ ପ୍ରକାଶ"ର ନବମ ଅଧ୍ୟାୟ, ଦଶମ ଶ୍ଳୋକରେ ଲେଖା ଅଛି - "କ୍ଷୀରଣ ଫଳିନଂ ଚୈବ କଣ୍ଟକାତ୍ୟଂ ଚ ବର୍ଯ୍ୟେୟେତି" ଅର୍ଥାତ କ୍ଷୀର ଝରୁଥିବା, ଫଳଯୁକ୍ତ ଏବଂ କଣ୍ଟାଯୁକ୍ତ ଗଛମାନଙ୍କୁ ତ୍ୟାଗ କରିବା ଉଚିତ ।

ଏହାର ବିପରୀତ ସମସ୍ତେ ଫଳ, ଫୁଲ ଓ ନାଗଫେଣୀ ଗଛ ଆଦି ଘର ପାଖରେ ଲଗାଇବାକୁ ବେଶୀ ପସନ୍ଦ କରନ୍ତି । କାରଣ ଏସବୁ ଗଛ ବଗିଚାର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ସହିତ, ବାତାବରଣକୁ ଶୁଦ୍ଧ କରିଥାନ୍ତି । ଆମ ପରିବାର ଲୋକମାନଙ୍କ ସମସ୍ୟା ସହିତ, ଏହି ବୃକ୍ଷମାନଙ୍କର କି ଭଳି ସମ୍ବନ୍ଧ ରହିଛି, ସେ କଥା କେଉଁଠି ବୁଝେଇ ଲେଖାନାହିଁ ।

"ସ୍ତ୍ରୀନାମନାୟେ ଚ ତରଚସ୍ତେ ବର୍ଯ୍ୟା ଗୃହକର୍ମଣୀ
କ୍ଷୀରିଣଃ କ୍ଷୀରିନାଶାୟ ଫଳିନଃ ପୁତ୍ର ନାଶନଃ
କଣ୍ଟକୀ କଲହଂ କୁର୍ଯ୍ୟାତକାନ୍ଥନ୍ନ ଧନକ୍ଷୟଂ
ଗୃଧ୍ରବୃକ୍ଷୟଂ ମହାରୋଗଂ ଶ୍ମଶାନଥଂ ମୃତିପଦମ"

ଅର୍ଥାତ ଯେଉଁ ବୃକ୍ଷ ସ୍ତ୍ରୀଲିଙ୍ଗବାଚକ, ସେ ଗୁଡିକ ବର୍ଜନୀୟ । ଦୁଧ ଭଳି ରସ ନିର୍ଗତ ହେଉଥିବା ବୃକ୍ଷ ଗୃହର ଦୁଧ ଦେଉଥିବା ପ୍ରାଣୀର ଦୁଧ ନଷ୍ଟ କରିଦେବ । ଫଳ ଦେଉଥିବା ବୃକ୍ଷ ପୁତ୍ର ନଷ୍ଟ କରିଦେବ । କଣ୍ଟାଥିବା ବୃକ୍ଷ ଘରେ କଳହ ସୃଷ୍ଟି କରିବ । କାଉ ବାସ କରୁଥିବା ଗଛ ଧନକ୍ଷତି କରିବ, ଗୃଧ୍ର ବାସ କରୁଥିବା ଗଛ ବ୍ୟାଧି ସୃଷ୍ଟି କରିବ, ଶ୍ମଶାନର ଗଛ ମୃତ୍ୟୁ ଆଣିଦେବ ।

ଏହିଭଳି ଅହେତୁକ ଭୟ ସୃଷ୍ଟି କରୁଥିବା ଶାସ୍ତ୍ରବଚନର ଅସଲ ଉଦ୍ଦେଶ୍ୟ ହେଉଛି - ଆପଣଙ୍କ ଘରେ ଯଦି କଳହ ସୃଷ୍ଟି ହେବ, ପୁତ୍ରର ମୃତ୍ୟୁ ହେବ, ଧନହାନୀ ହେବ କିମ୍ବା କେହି ବ୍ୟାଧିଗ୍ରସ୍ତ ହେବ, ତେବେ ଆପଣ ଯଥାଶୀଘ୍ର ବାସ୍ତୁଶାସ୍ତ୍ରୀଙ୍କ ପାଖକୁ ଦୌଡ଼ି ଯିବେ ଏବଂ ସେ ଉପରୋକ୍ତ ସମସ୍ୟାର କାରଣ ଗଛମାନଙ୍କୁ ଦାୟୀ ବୋଲି କହିବେ । ସମାଧାନର ଉପାୟ ପାଇଁ

ପ୍ରଥମେ ଉକ୍ତ ଗଛକୁ କାଟି ସଫା କରିବାକୁ କହିବେ । ତା'ପରେ ଯଥାକ୍ରମେ କର୍ମକାଣ୍ଡ, ମନ୍ତ୍ରପାଠ ଓ ପୂଜା ପାଇଁ ଆପଣଙ୍କ କଷ୍ଟ ଅର୍ଜିତ ଧନକୁ ଲୁଣ୍ଠନ କରି ନେବେ ।

'କାଣେ ରାଜଭୟଂ, ବିଦ୍ୟାବିତଜୀର୍ଣ୍ଣେ
ଗୃହକ୍ଷୟଃ, ତ୍ରିଶୀର୍ଷେ ଗର୍ଭପାତଃସ୍ୟାଦ
ବହୁଶୀର୍ଷେ ମୃତପ୍ରଜା'

(ବିଶ୍ୱକର୍ମ ପ୍ରକାଶ 9-19 ଶ୍ଳୋକ)

ଅର୍ଥାତ - କଣା ବୃକ୍ଷଦ୍ୱାରା ରାଜଭୟ, ଅତ୍ୟନ୍ତ ଜୀର୍ଣ୍ଣ ବୃକ୍ଷଦ୍ୱାରା ଘରର ସର୍ବନାଶ, ତିନି ମୁଣ୍ଡିଆ ବୃକ୍ଷଦ୍ୱାରା ସ୍ତ୍ରୀଙ୍କ ଗର୍ଭ ନଷ୍ଟ ହୋଇଯିବ ।

ଏହି ଅଦ୍ଭୁତ ବାସ୍ତୁଶାସ୍ତ୍ରରେ କେଉଁଠି ବି ଲେଖା ଯାଇନାହିଁ ଯେ କଣା ବୃକ୍ଷ, ତିନି ମୁଣ୍ଡିଆବୃକ୍ଷ ଓ ବହୁ ମୁଣ୍ଡିଆବୃକ୍ଷର ନାମ କଅଣ ବା ସ୍ୱରୂପ କଅଣ ? ଯଦି ମୁଣ୍ଡ ଓ ଆଖି ଥିବା ବୃକ୍ଷ ଅଛି, ତେବେ ହାତ ଗୋଡ଼ ମୁହଁ, ଦାଢ଼ୀ ଓ ନିଶ ଥିବା ବୃକ୍ଷ ମଧ୍ୟ ଥିବା ସମ୍ଭବ ।

'କୁବଚେ କୁବ୍ରାସ୍ତଥୈବ' (ଅଧ୍ୟାୟ 9-18)

ଅର୍ଥାତ କୁବଜା ବୃକ୍ଷ ଯୋଗୁଁ, ଘରେ କୁବଜା ସନ୍ତାନ ଜନ୍ମ ହେବ । ଏହା କିପରି ସମ୍ଭବ ? ହୁଏତ କୁବଜା ମାତା କିମ୍ବା ପିତା କାରଣରୁ, ସେଭଳି ସନ୍ତାନ ଜନ୍ମ ହୋଇପାରେ । ତଥାକଥିତ ବାସ୍ତୁଶାସ୍ତ୍ର ଅନୁସାରେ ଯଦି ବିଭିନ୍ନ ଆକାରର ସନ୍ତାନ ଜନ୍ମ ହୋଇପାରେ, ତେବେ ଯାହାକୁ ଲମ୍ବା ସନ୍ତାନ ଦରକାର, ସେ ନିଜ ଘର ବାଡ଼ିରେ ୟୁକାଲିପଟସ କିମ୍ବା ଦେବଦାରୁ ଗଛ ଲଗାଇବ । ଆଉ ଯାହାକୁ ମୋଟା ବା ପତଳା ସନ୍ତାନ ଦରକାର, ସେ ସେହିଭଳି ଗଛ ଲଗାଇବ । ଏହା ଯଦି ସତ, ତେବେ ଯା' ଘରେ ବୋନାସାଇ ଗଛ ଲଗା ଯାଇଛି, ତା' ଘରେ ବାମନ ପୁଅ ଜନ୍ମ ହେବା ଉଚିତ । ଏଭଳି ଘଟଣା ତ କେଉଁଠି ଦେଖିବାକୁ ମିଳୁନାହିଁ ।

'ବଲ୍ଲୀବୃରେ ଦରିଦ୍ରତତ, ପୁଷ୍ପବୃକ୍ଷେ କୁଳକ୍ଷୟଃ' (ନବମ ଅଧ୍ୟାୟ 20 ଶ୍ଳୋକ)

ଅର୍ଥାତ ବୃକ୍ଷକୁ ଲତା ଆଚ୍ଛାଦିତ କରିଥିଲେ ଦରିଦ୍ର ହେବ ଏବଂ ପୁଷ୍ପବୃକ୍ଷ ଯୋଗୁଁ କୁଳନାଶ ହେବ । ଏହି ଶାସ୍ତ୍ର ବଚନକୁ ଯଦି ଆମେ ସତ ମାନିବା, ତେବେ ଘର ଆଖ ପାଖରେ କୌଣସି ଗଛ, ଲତା ଲଗାଇବା ଉଚିତ ନୁହେଁ ।

ପ୍ରଶ୍ନ ଉଠୁଛି- ଯେଉଁମାନଙ୍କର ଘର ଆଖ ପାଖରେ ଅନେକ ପ୍ରକାର ବୃକ୍ଷ ଲତା ଆଗରୁ ରହିଛି, ସେମାନଙ୍କର କୁଳନାଶ ହେଉନାହିଁ କାହିଁକି ?

'ତରୁବେଧ ବିଜନୀୟାଦ୍ଧଦି ଦ୍ୱାରମୁଖେ ସ୍ଥିତମ,
କୁମାର ମରଣମଞ୍ଜୟଂ ନାନା ରୋଗଶ୍ଚ ଜାୟତେ,
ଅପସ୍ମାରଭୟ ବିଦ୍ଧାଦ ଗୃହାଭ୍ୟନ୍ତରବାସିନାମ ଦ୍ୱାରାଗ୍ରେ
ପଞ୍ଚବେଧ ତୁ ଦୁଃଖଶୋକାମୟପ୍ରଦମ' ।

(ଅଧ୍ୟାୟ - 74 - 75 ଶ୍ଳୋକ)

ଅର୍ଥାତ ଦ୍ୱାର ସମ୍ମୁଖରେ ବୃକ୍ଷ ଥିଲେ ତାକୁ 'ତରୁ ବେଧ' କହନ୍ତି । ଏହି ନିଷେଦ୍ଧ ବୃକ୍ଷ ଦ୍ୱାରା ପୁତ୍ର ମୃତ୍ୟୁ ଓ ଅନେକ ରୋଗ ଭୋଗ କରିବାକୁ ପଡେ । ଘର ଭିତରେ ବାସ କରୁଥିବା ବ୍ୟକ୍ତିଙ୍କୁ ମିରିଗୀ ରୋଗର ଭୟ ରହେ । ଦ୍ୱାର ଆଗରେ ପାଞ୍ଚ ପ୍ରକାର ନିଷେଦ୍ଧ ବୃକ୍ଷ ଦ୍ୱାରା ଦୁଃଖ, ଶୋକ ଓ ରୋଗ ଭୋଗ କରିବାକୁ ପଡିଥାଏ । (ନିଷେଦ୍ଧ ବୃକ୍ଷମାନଙ୍କ ନାମ ଉଲ୍ଲେଖ ନାହିଁ ।)

ତଥାକଥିତ ବାସ୍ତୁ ଶାସ୍ତ୍ରମାନଙ୍କରେ ଗୃହର କଳହ, ଧନ ହାନୀ, ପ୍ରାଣହାନୀ ରୋଗ, ଶୋକ ପାଇଁ ଯଦିଓଆହୁରି ଅନେକ କାରଣ ଉଲ୍ଲେଖ ଅଛି ।

ସେମାନଙ୍କ ଭିତରେ ବୃକ୍ଷ ଲତାକୁ ମଧ ବାଦ ଦିଆଯାଇନାହିଁ । ବାସ୍ତୁଶାସ୍ତ୍ରର ଭୟ ଦେଖାଇ କେତେକ ପଣ୍ଡିତ, ଜନସାଧାରଣଙ୍କୁ ବୋକା ବନେଇ, ସହଜରେ ଧନ ଲୁଟି ନେଉଛନ୍ତି । କେହି ତର୍କ ବୁଦ୍ଧିର ପ୍ରୟୋଗ କରି, ଅସଲ ସତ୍ୟକୁ ଜାଣିବାପାଇଁ, ଚେଷ୍ଟା ବି କରୁନାହାନ୍ତି ।

ପ୍ରତ୍ୟେକ ବୃକ୍ଷ ଓ ଲତା ପ୍ରକୃତିଦତ୍ତ, ଅମୂଲ୍ୟ ସମ୍ପଦ । ସେଥିରେ କୌଣସି ଶୁଭ ଅଶୁଭ କଥା ନଥାଏ । ପ୍ରତ୍ୟେକ ଗଛର ଆକାର ପ୍ରକାର ଓ ଗୁଣ ଆଦି ଅଲଗା ଅଲଗା ହୋଇଥାଏ । ବୃକ୍ଷ ଓ ଲତାମାନଙ୍କ ବିଷୟରେ ନାନା ପ୍ରକାର ଅବୈଜ୍ଞାନିକ କଥା ପ୍ରଚାର କରି ଏବଂ ଲୋକମାନଙ୍କୁ ଗାଲୁଗପ ଶୁଣାଇ ଭୟଜାତ କରିବା ପଛରେ ଥାଏ, କେବଳ ବ୍ୟବସାୟିକ ମନୋବୃତ୍ତି । କିଛି ସ୍ୱାର୍ଥାନ୍ୱେଷୀ ବାସ୍ତୁଶାସ୍ତ୍ରୀ ପଣ୍ଡିତ, ବୃକ୍ଷ ଲତାକୁ ନେଇ ସମାଜରେ, ଅହେତୁକ ବିଶ୍ୱାସ ବୃଦ୍ଧି କରୁଛନ୍ତି । ସେଥିପାଇଁ ଆମକୁ ସତର୍କ ଓ ସଚେତନ ହେବା ଅତ୍ୟନ୍ତ ଆବଶ୍ୟକ ।

*********

# ଆଧ୍ୟାତ୍ମିକତା ହିଁ ନୈତିକତାର ଆଧାର ନୁହେଁ

ଆସ୍ତିକବାଦୀ ଲୋକମାନେ ପ୍ରାୟ ଅଭିଯୋଗ କରିଥାନ୍ତି ଯେ, ହେତୁବାଦୀ ବା ନିରୀଶ୍ୱରବାଦୀମାନଙ୍କ ଭିତରେ ନୈତିକତାର ଘୋର ଅଭାବ ଥାଏ । ସେମାନଙ୍କ ମତରେ - "ନୈତକତାର ଆଧାର ବା ମୂଳ ହେଉଛି ଆଧ୍ୟାତ୍ମିକତା । କାରଣ ସଚ୍ଚୋଟପଣ, ପ୍ରେମ, ଦୟା, ଇମାନଦାରୀ ଓ ଶୁଦ୍ଧତା ଆଦି କେବଳ ଆଧ୍ୟାତ୍ମିକତା ଓ ଈଶ୍ୱରଙ୍କ ଠାରୁ ପ୍ରାପ୍ତ ହୋଇଥାଏ । ଏହାର ବିପରୀତ ନିରୀଶ୍ୱରବାଦୀମାନେ, କେବେ ବି ନୈତିକ ହୋଇପାରିବେ ନାହିଁ । କାରଣ ସେମାନେ ନୈତିକତାର ଆଧାର, ଈଶ୍ୱର ଓ ଧର୍ମକୁ ଅସ୍ୱୀକାର କରୁଛନ୍ତି ।" ଏହା କିନ୍ତୁ ସତ୍ୟ ନୁହେଁ ।

ନୈତିକତା କଅଣ ?

ନୈତିକତାର ଅର୍ଥ ସଦାଚାର । ସଦାଚାର ଭିତରେ ସତ୍ୟନିଷ୍ଠ, ଇମାନଦାରୀ ଏବଂ ଶୁଦ୍ଧତା, ଏହି ତିନୋଟି ଗୁଣ ସମ୍ପୃକ୍ତ ଥାଏ । ନୈତିକତା ହେଉଛି ମଣିଷପାଇଁ, ପ୍ରକୃତି ଦତ୍ତ ଏକ ଆନ୍ତରିକ ପ୍ରବୃତ୍ତି । ଏହା ମାନବ ସମାଜ ଓ ଆଚାର ଦର୍ଶନର ଏକ ମୁଖ୍ୟ ଅଂଶ । ଏହା ପଛରେ ଅଛି – "ମାନବର ବ୍ୟବହାର, ପ୍ରକୃତି, ମାନବ ବିଜ୍ଞାନ ଓ ସମାଜ ବିଜ୍ଞାନ ସମ୍ପର୍କରେ ହୋଇଥିବା ବାରମ୍ବାର ଅନୁସନ୍ଧାନ ଓ ଗବେଷଣାର ପରିଣାମ ।"

ପଶ୍ଚିମ ଦେଶମାନଙ୍କରେ ଆସ୍ତିକବାଦୀ ଓ ହେତୁବାଦୀ ଲୋକମାନଙ୍କ ମଧ୍ୟରେ ତର୍କ ବିତର୍କ ଲାଗି ରହିଛି । କେତେକ ଦେଶରେ ହେତୁବାଦୀଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ଭାରତରେ ଆଜି ବି ହେତୁବାଦୀଙ୍କ ସଂଖ୍ୟା ନଗଣ୍ୟ ଏବଂ ଆସ୍ତିକବାଦୀଙ୍କ ସଂଖ୍ୟା ଅଧିକ । ତଥାପି ଆମ ଦେଶରେ ତଳୁ ଉପର ପାହ୍ୟା ପର୍ଯ୍ୟନ୍ତ, ହେଉଥିବା ଭ୍ରଷ୍ଟାଚାର, ଶୋଷଣ ଓ ବେଇମାନୀ ଯୋଗୁଁ, ସାଧାରଣ ଆସ୍ତିକ ଲୋକମାନେ ହିଁ ତ୍ରାହି ତ୍ରାହି ଚିତ୍କାର କରି ପ୍ରତିଦିନ ଗଗନ ପବନ କମ୍ପାଉଛନ୍ତି । କିଛି ଆସ୍ତିକବାଦୀ ବୋଲାଉଥିବା ତଥାକଥିତ ସାଧୁ, ସନ୍ୟାସୀ, ବାବା, ଧର୍ମଗୁରୁ ଓ ନେତାମାନଙ୍କ ନୈତିକତା ଜାଗ୍ରତ କରିବା ପାଇଁ, ତଥାକଥିତ ଈଶ୍ୱର ଓ କୁଢ଼ କୁଢ଼ ଧର୍ମଶାସ୍ତ୍ର କୌଣସି ଚମତ୍କାର ଦେଖାଇ ପାରୁନାହିଁ । ସମୟ ସମୟରେ ଅନୈତିକ କାମ କରୁଥିବା, ଅପରାଧରେ ପୋଲିସ ସେମାନଙ୍କୁ ଧରିନେଇ, ଜେଲ ଭିତରେ ବନ୍ଦୀକରି ରଖୁଛନ୍ତି ।

ପ୍ରକୃତରେ ନୈତିକତାର ଆଧ୍ୟାତ୍ମିକତା ସହିତ, କୌଣସି ସମ୍ପର୍କ ନାହିଁ । ତଥାକଥିତ ଈଶ୍ୱର ଓ ଆଧ୍ୟାତ୍ମିକତା ବିନା ମଧ୍ୟ ଜଣେବ୍ୟକ୍ତି, ନୈତିକ ସମ୍ପନ୍ନ ହୋଇପାରିବ । ବ୍ୟକ୍ତିର କ୍ରିୟା କଳାପ ପାଇଁ, ନୈତିକତା ଏକ ମାର୍ଗଦର୍ଶକ ହୋଇଥାଏ । ପ୍ରତ୍ୟେକ ବ୍ୟକ୍ତିର ଏକ ସ୍ୱତନ୍ତ୍ର ଇଚ୍ଛା ବା କାମନା ଥାଏ । ସେ ନିଜର ଇଚ୍ଛା ପୂର୍ଣ୍ଣ କରିବା ପୂର୍ବରୁ, ପ୍ରଥମେ ଚିନ୍ତା କରି ଦେଖେ, ଯେ ମୁଁ ଯେଉଁ କାମ କରିବାକୁ ଯାଉଛି, ତାହା ନୈତିକ ରୂପେ ଠିକ ନା ଭୁଲ ? ଏହି ନିର୍ଣ୍ଣୟ ମଧ୍ୟ କିଛି ଲୋକଙ୍କ ପାଇଁ ନୈତିକ ଏବଂ କିଛି ଲୋକଙ୍କ ପାଇଁ ଅନୈତିକ ହୋଇପାରେ । ବ୍ୟକ୍ତିର ବ୍ୟବହାର ଓ ସେ ବ୍ୟବହାରକୁ କିପରି ଢଙ୍ଗରେ ପାଳନକରନ୍ତି, ତାହା ନୈତିକତାର ଏକ ମହତ୍ତ୍ୱପୂର୍ଣ୍ଣଅଙ୍ଗ ।

ନୈତିକତାକୁ ନେଇ କେତେକ ପ୍ରଶ୍ନ ଉଠିଥାଏ -

(କ) ଯଦି ଆନ୍ତରିକ ମୂଲ୍ୟ ଆମ ଭିତରେ ଅଛି, ତେବେ ତା'କୁ କିଭଳି କର୍ମରେ ବିନିଯୋଗ କରାଯାଇ ପାରିବ ?

(ଖ) ଚାରିତ୍ରିକ ମୂଲ୍ୟବୋଧ କ'ଣ ପ୍ରତ୍ୟେକ ମଣିଷ ଭିତରେ ସୃଷ୍ଟି କରା ଯାଇପାରିବ ?

ଏହି ପ୍ରଶ୍ନଗୁଡିକର ଉତ୍ତର ପାଇଁ, ଆଧ୍ୟାତ୍ମିକତା ବା ଈଶ୍ୱରଙ୍କ କୌଣସି ଆବଶ୍ୟକତା ନାହିଁ । ମାନବ ମନର ମନସ୍ତତ୍ତ୍ୱ ବିଜ୍ଞାନ ଓ ସମାଜ ବିଜ୍ଞାନ ହିଁ ଏହାର ସଠିକ ଉତ୍ତର, ଖୋଜିବାପାଇଁ ଉପଯୁକ୍ତ ଆଧାର ସୃଷ୍ଟି କରିପାରିବ ।

ଅନୈତିକତାକୁ ସୁନ୍ଦର ଭାବେ ଲୁଚାଇ ରଖିବା ପାଇଁ, ଧର୍ମ ହିଁ ବେଶୀ ସାହାଯ୍ୟ କରିଥାଏ । ଏହାର ଉଦାହରଣ, ମଣିଷ ସମାଜରେ, ଗୋଟିଏ ନୁହେଁ କୋଟିଏ ମିଳିବ । ଜନତାଙ୍କ ଅଗୋଚରରେ, କରିଥିବା ଅନୈତିକ କାମ ପାଇଁ, ମାନସିକ ସ୍ତରରେ ଅପରାଧବୋଧ ଅନୁଭବ କରୁଥିବା ବ୍ୟକ୍ତି, ମନ୍ଦିରକୁ ଯାଇ ଦାନ, ଦକ୍ଷିଣା ଦେଇ କିମ୍ବା କୌଣସି ତୀର୍ଥସ୍ଥଳର ତଥାକଥିତ ପବିତ୍ର ନଦୀରେ ବୁଡ଼ ପକାଇ, ନିଜକୁ ପାପରୁ (ଅନ୍ୟାୟ, ଅତ୍ୟାଚାର, ଭ୍ରଷ୍ଟାଚାର, କୁକାର୍ଯ୍ୟ ଜନିତ ଅପରାଧ) ମୁକ୍ତ ହୋଇଯାଏ । ପରବର୍ତ୍ତୀ ସମୟରେ ପୁଣି ସେହି ସବୁ ଅପକର୍ମ କରିଥାଏ ।

ବିଭିନ୍ନ ସତସଙ୍ଗମାନଙ୍କରେ ପ୍ରବଚନ ଦେଉଥିବା ବାବାମାନେ କହିଥାନ୍ତି "ବହୁତ ଲୋକ ଅନେକ ପ୍ରକାର ଜ୍ଞାନ ପ୍ରାପ୍ତ କରୁଛନ୍ତି, କିନ୍ତୁ ଯେଉଁମାନେ ଆଧ୍ୟାତ୍ମିକ ଜ୍ଞାନ ପ୍ରାପ୍ତ କରନ୍ତି,

ସେହିମାନଙ୍କର ଜ୍ଞାନ ହିଁ ସର୍ବଶ୍ରେଷ୍ଠ ଜ୍ଞାନ । ଅନ୍ୟ ସମସ୍ତ ଜ୍ଞାନ ଭୌତିକ ସୁଖ ପ୍ରାପ୍ତିପାଇଁ ହୋଇପାରେ କିନ୍ତୁ ଆଧ୍ୟାତ୍ମିକ ଜ୍ଞାନରୁ ହିଁ ନୈତିକତା ପ୍ରାପ୍ତ ହୋଇପାରିବ । ଅର୍ଥାତ ନୈତିକତା ସହିତ ଆଧ୍ୟାତ୍ମିକତାର ସିଧା ସମ୍ବନ୍ଧ ରହିଛି ।" ଏହିଭଳି ପ୍ରବଚନରେ କେତେ ସତ୍ୟତା ରହିଛି, ସେସବୁ ଆଜିର ଚଳନ୍ତି ସ୍ୱୟଂଭୂ ଭଗବାନମାନଙ୍କୁ ଦେଖିଲେ ସ୍ପଷ୍ଟ ହୋଇଯାଉଛି ।

ଆସ୍ତିକ ଲୋକମାନଙ୍କ ମନରେ ଉଚ୍ଚ ନୀଚ ଜାତିଭେଦ, ଈଶ୍ୱର ତିଆରି ନୀତି ନିୟମ ବୋଲି ବିଶ୍ୱାସ ରହିଛି । ଏପରିକି ଶିକ୍ଷା, ସମ୍ପତ୍ତି, ମାନସମ୍ମାନ ଆଦିରେ ମଧ୍ୟ ଅନେକ ବିଭେଦ ରହିଛି । ଏହି ସବୁ ପ୍ରଭେଦ ଆଧ୍ୟାତ୍ମିକ ନୀତି ଅନୁସାରେ ନୈତିକ ବୋଲି କିପରି କହିପାରିବା ?

ଅନ୍ୟ ପକ୍ଷରେ ହେତୁବାଦୀମାନେ, ମାନବୀୟ ଦୃଷ୍ଟିକୋଣରୁ ବିଚାର କରି ଏହି ପ୍ରଥା ବା ନୀତିକୁ ଏକ ଭୁଲ ପରମ୍ପରା ବୋଲି ମାନୁଛନ୍ତି । ହେତୁବାଦୀ ଚାହୁଁଛି, ଗୋଟିଏ ଅସହାୟ, ଗରିବ ଓ ଦଳିତ ବ୍ୟକ୍ତିକୁ ସାହାଯ୍ୟ କରିବାପାଇଁ । ସେଇଠି ଆସ୍ତିକ କହୁଛି – "ଏହା ତା'ର ପୂର୍ବ ଜନ୍ମର ପାପର ଫଳ । ଭଗବାନ ତା' କଥା ବୁଝିବେ । ଏଇଥିରୁ ବୁଝା ପଡୁଛି, କିଏ ବେଶୀ ମାନବୀୟ ଓ ନୈତିକ ବ୍ୟକ୍ତି ?

ଜଣେ ହେତୁବାଦୀ ବ୍ୟକ୍ତି ଯଦି, ସଚ୍ଚୋଟ ଓ ସଦାଚାରୀ ହୋଇପାରେ, ତେବେ ଜଣେ ଆସ୍ତିକବାଦୀ ବ୍ୟକ୍ତି ବେଇମାନ ହେବା ଉଚିତକି ? ଏହାର ବିପରୀତ ଆମେ ଦେଖୁଛୁ, ଆମ ଦେଶର ଅନେକ ତଥାକଥିତ ସାଧୁ, ସନ୍ୟାସୀ, ବାବା, ଧର୍ମଗୁରୁ ଓ ଧର୍ମମାତା ଆଦି ଅନେକ ପ୍ରକାର ଅନୈତିକ କର୍ମକରି, ଜେଲ ଦଣ୍ଡ ଭୋଗ କରୁଛନ୍ତି ।

ବାସ୍ତବ କ୍ଷେତ୍ରରେ ଦେଖାଯାଏ, ଆପଣ ଯଦି ଧନୀବ୍ୟକ୍ତି (ଯେଉଁ ଉପାୟରେ ହେଉ ବହୁତ ଧନ କମେଇଛନ୍ତି) ଅସ୍ତିକମାନେ, ଆପଣଙ୍କୁ ସମ୍ମାନ ଦେବେ କିନ୍ତୁ ଆପଣ ଯଦି ସଚ୍ଚୋଟ କିନ୍ତୁ ଗରିବ, ତେବେ ଉପେକ୍ଷା କରିବେ ଓ ଅପମାନିତ କରିବେ । ଏହାକୁ ଆମେ ନୈତିକତା ବୋଲି କିପରି କହିବା ? ଜଣେ ହେତୁବାଦୀ ଧନୀ ଓ ଗରିବଙ୍କୁ ସମାନ ଭାବେ ସମ୍ମାନ ଦେଲେ, ତାକୁ ଆମେ ଅନୈତିକ ବୋଲି କହି ପାରିବାକି ? ଆସ୍ତିକ ବ୍ୟକ୍ତିର ଅଭିମାନ ବା ଅହଙ୍କାର ରହିବା ଉଚିତ ନୁହେଁ । ତଥାକଥିତ ସାଧୁ ସନ୍ୟାସୀ କହନ୍ତି - "ଅଭିମାନ ତ୍ୟାଗ କର, ମୋହ ମାୟା ତ୍ୟାଗ କର ।" କିନ୍ତୁ ଆଧ୍ୟାତ୍ମବାଦୀମାନେ ଏ ସବୁ ତ୍ୟାଗ କରି ପାରୁଛନ୍ତିକି ? ଚଳନ୍ତି ସମାଜରେ କୌଣସି ଧାର୍ମିକ ବ୍ୟକ୍ତିର ଅଭିମାନ ବା ଅହଙ୍କାରକୁ ଆମେ ସଦାଚାର ବା ନୈତିକତା ବୋଲି କହିପାରିବାକି ? ଏହାର ବିପରୀତ ଜଣେ ସାଧାରଣ ହେତୁବାଦୀ ସ୍ୱାଭିମାନୀ

ହେଲେ ମଧ୍ୟ ତା' ଭିତରେ ଦୟା, କ୍ଷମା, ସ୍ନେହ ଓ ତ୍ୟାଗ ଗୁଣ ସବୁ ଥାଇପାରେ । କାରଣ ଏହା ତା'ର ପ୍ରକୃତି ଦତ୍ତ ଆଚରିକ ଗୁଣ । ଏହି ଗୁଣ ତାକୁ କୌଣସି ଈଶ୍ୱର ବା ଧର୍ମରୁ ପ୍ରାପ୍ତ ହୋଇନଥାଏ । ମାଂସାହାର ଗୋଟିଏ ହେତୁବାଦୀ ପାଇଁ ରୁଚିଯୁକ୍ତ ସାଧାରଣ ଖାଦ୍ୟ ହୋଇପାରେ, କିନ୍ତୁ ଅହିଂସାର ପ୍ରଚାରକ ଧାର୍ମିକ ବ୍ୟକ୍ତି, ନିର୍ଦ୍ଦୋଷ ପଶୁ ପକ୍ଷୀଙ୍କୁ ଦେବୀଙ୍କ ଆଗରେ ବଳିଦେଇ ମାଂସ ଭକ୍ଷଣ କରିବା, କ'ଣ ହିଂସା ଶ୍ରେଣୀରେ ଆସିବନାହିଁ ?

କିଛି ଧାର୍ମିକ ବ୍ୟକ୍ତି, ମଣିଷର ଏକ ପ୍ରାକୃତିକ ମୌଳିକ ଯୌନ ସମ୍ବନ୍ଧ ଓ ପ୍ରେମାଳାପକୁ ପାପ ତଥା ଘୃଣ୍ୟ କର୍ମ ବୋଲି ମାନନ୍ତି । ଏହା ଯଦି ଅନୈତିକ, ତେବେ ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ତଥାକଥିତ ଅବତାର, ଦେବତା ଓ ଦେବୀମାନଙ୍କର ଅବିଧ ଯୌନ ସମ୍ବନ୍ଧକୁ ଆମେ କେଉଁ ଶ୍ରେଣୀରେ ଗଣନା କରିବା ?

ଆସ୍ତିକମାନେ ପ୍ରତ୍ୟେକ କର୍ମ ପଛରେ ଈଶ୍ୱରଙ୍କ ଇଚ୍ଛା ଥାଏ ବୋଲି ମାନନ୍ତି । ସେମାନେ ପ୍ରତ୍ୟେକ ଘଟଣାର ସୁପରିଣାମକୁ, ଈଶ୍ୱରଙ୍କ କୃପା ଭାବି କୃତଜ୍ଞତା ଜଣାଇଥାନ୍ତି । କିନ୍ତୁ ହେତୁବାଦୀମାନେ ପ୍ରତ୍ୟକ୍ଷ ଭାବେ, ପ୍ରମାଣିତ ବ୍ୟକ୍ତି ବିଶେଷଙ୍କୁ, ସେମାନଙ୍କ ସୁକର୍ମ ପାଇଁ ଧନ୍ୟବାଦ ଦେବା ସହ କୃତଜ୍ଞତା ଜଣାଇଥାନ୍ତି । ଯଥା : ଆମେ ଯେଉଁ ଖାଦ୍ୟ ଖାଉ, ସେହି ଖାଦ୍ୟ ଉତ୍ପାଦନ କରୁଥିବା କୃଷକଙ୍କୁ ଧନ୍ୟବାଦ, ରୋଗୀକୁ ଚିକିତ୍ସା କରି ସୁସ୍ଥ କରିଥିବା ଡାକ୍ତରଙ୍କୁ ଧନ୍ୟବାଦ, ଉପଯୁକ୍ତ ଶିକ୍ଷା ପ୍ରଦାନ କରି, ରୋଜଗାରକ୍ଷମ କରିଥିବା ଶିକ୍ଷକଙ୍କୁ ଧନ୍ୟବାଦ, ଆମର ନିତିଦିନିଆ ଜୀବନକୁ ସୁଗମ କରୁଥିବା ଭୌତିକ ଯନ୍ତ୍ରପାତି, ଯାନବାହାନ ଆଦି ଉଦ୍ଭାବନ କରିଥିବା ବୈଜ୍ଞାନିକ ଓ ଇଞ୍ଜିନିୟରଙ୍କୁ ଧନ୍ୟବାଦ ଜଣେଇବା କ'ଣ ଅନୈତିକ ଶ୍ରେଣୀରେ ଆସିବ ? କୃଷକ, ଶ୍ରମିକ, ଶିକ୍ଷକ, ଡାକ୍ତର, ଇଞ୍ଜିନିୟର, ବୈଜ୍ଞାନିକମାନଙ୍କୁ ଧନ୍ୟବାଦ ନଦେଲେ, ସେମାନଙ୍କୁ ଆମେ ଅପମାନ କଲାଭଳି ହେବ ଏବଂ ଅନୈତିକ ଶ୍ରେଣୀରେ ହିଁ ଆସିବ ।

ବସ ବା ଟ୍ରେନରେ ଯାତ୍ରା କରୁଥିବା ତୀର୍ଥଯାତ୍ରୀମାନେ ଦୁର୍ଘଟଣାରେ, କେହି ଜଣେ ବା ଦୁଇ ଜଣ ବଞ୍ଚିଗଲେ ଆସ୍ତିକମାନେ କହନ୍ତି – "ଈଶ୍ୱରଙ୍କ ଦୟାରୁ ବଞ୍ଚି ଗଲା କିନ୍ତୁ ଶହେ ଲୋକ ମରିଗଲେ ମଧ୍ୟ କହନ୍ତି, ଏହା ତାଙ୍କର ଭାଗ୍ୟରେ ଲେଖା ଥିଲା ।" ଭକ୍ତମାନଙ୍କୁ କାହିଁକି ମାରିଦେଇ ବୋଲି, ସେତେବେଳେ କେହି ଈଶ୍ୱରଙ୍କୁ ଦୋଷ ଦିଅନ୍ତି ନାହିଁ । ମଜା କଥା ହେଉଛି - ଦୁନିଆରେ ସମସ୍ତ ଧର୍ମଗୁରୁ ନିଜର ଭକ୍ତମାନଙ୍କୁ ଉପଦେଶ ଦେଇ କହନ୍ତି – 'ତୁମେ

ଦୟାବାନ ହୁଅ, ପ୍ରେମକୁ ବିସ୍ତାର କର, ସତ୍ୟ ପଥରେ ଚାଲ, ହିଂସା କରନାହିଁ" ତଥାପି ସେମାନେ ସଦାଚାରୀ ହୋଇ ପାରଚିନାହିଁ । କାରଣ ଅସଲ କଥା ହେଉଛି - ନୈତିକତା ଦ୍ୱାରା ଧର୍ମ ତିଆରି ହେବା ସମ୍ଭବ କିନ୍ତୁ ଧର୍ମ ଦ୍ୱାରା ନୈତିକତା ତିଆରି କରିବା ସମ୍ଭବ ନୁହେଁ । ଏହା ଅନେକ ଥର ପ୍ରମାଣିତ ହୋଇ ସାରିଛି ।

ନୈତିକତା ମଣିଷର ଜନ୍ମଗତ ପ୍ରବୃତ୍ତି, ଯାହା ତା'ର ବ୍ୟବହାର ଦ୍ୱାରା ନିର୍ଣ୍ଣୟ କରିହୁଏ । ଯେଉଁ ବ୍ୟକ୍ତି ସମାଜର କୌଣସି ନୀତି ନିୟମକୁ ମାନି ଚଳିବାକୁ ଚାହେଁ ନାହିଁ, ସେଭଳି ମଣିଷ ଯେକୌଣସି ମନ୍ଦିର, ମସଜିଦ, ଚର୍ଚ୍ଚ ବା ଗୁରୁଦ୍ୱାରକୁ ଯାଇ ପୂଜା ପାଠ କଲେ ବି ନୈତିକତାର ପାଠ ପଢ଼ିପାରିବ ନାହିଁ । ସେ ତା'ର ମନ୍ଦ ପ୍ରବୃତ୍ତି ଗୁଡିକୁ ତ୍ୟାଗ କରି ପାରିବନାହିଁ । କାରଣ ଯଦି ସତରେ ତଥାକଥିତ ଈଶ୍ୱର ବା ଧର୍ମ ବ୍ୟକ୍ତିକୁ ସଦାଚାରୀ କରିବାର ଶକ୍ତି ରଖିଥାନ୍ତେ, ତେବେ ଦୁନିଆରେ ସମସ୍ତେ ସତ୍ୟବାଦୀ, ପରୋପରୀ ଓ ଶାନ୍ତିପ୍ରିୟ ହୋଇଥାନ୍ତେ । ଅନ୍ୟ ଦେଶ କଥା ଛାଡ଼ନ୍ତୁ, ଆମ ଦେଶରେ ଯୁଗ ଯୁଗରୁ ଅନେକ ତଥାକଥିତ ଅବତାର ପୁରୁଷ ଜନ୍ମ ଗ୍ରହଣ କରିଛନ୍ତି ବୋଲି ଆସ୍ତିକମାନେ ଦାବି କରୁଛନ୍ତି । ଶାସ୍ତ୍ର ଅନୁସାରେ ତେତିଶ କୋଟି ଦେବୀ ଓ ଦେବତା ଏ ଦେଶରେ ବାସ କରୁଥିବା ମଧ୍ୟ ମାନୁଛନ୍ତି । ହଜାର ହଜାର ମୁନି, ଋଷି ଜନ୍ମ ହୋଇଥିଲେ । ତଥାପି ଆମର ଜନତା ନୈତିକତାର ଅସଲ ଅର୍ଥ ବୁଝି ପାରିନାହାନ୍ତି ।

ନୈତିକତାର ପ୍ରକୃତ ଅର୍ଥ ବୁଝିବା ଓ ପାଳନ କରିବା ପାଇଁ ଆସନ୍ତୁ ଏକ ବିକଳ୍ପ ପନ୍ଥା ଉପରେ ବିଚାର କରିବା । ତାହା ହେଉଛି ହେତୁବାଦୀ ଚିନ୍ତାଧାରା । ଯଥା : ସମାଜ ଦ୍ୱାରା ତିଆରି ହୋଇଥିବା ନୀତି ନିୟମକୁ ନିଷ୍ଠାର ସହ ମାନିଚଳିବା, ମୁଁ ଯାହା ଶୁଣିବାକୁ ପସନ୍ଦ କରେନାହିଁ, ଅନ୍ୟକୁ ସେଭଳି କଥା ନ କହିବା, ତଥାକଥିତ ଈଶ୍ୱର ଅପେକ୍ଷା ନିଜ ଉପରେ ଭରସା ରଖିବା ଏବଂ ଅନୈତିକ କର୍ମ କରୁଥିବା ବ୍ୟକ୍ତିଙ୍କୁ ଠାବ କରି କାନୁନ ବ୍ୟବସ୍ଥା ଅନୁସାରେ ଦଣ୍ଡ ଦେବା ।

ଯଦି ଆଜି ଆମେ ନିର୍ଭୟରେ ରାସ୍ତାରେ ଯାତାୟତ କରି ପାରୁଛୁ ଏବଂ ନିଜ ଘରେ ଶାନ୍ତିରେ ଶୋଇ ପାରୁଛୁ, ତା'ର ଅସଲ କାରଣ ଈଶ୍ୱର ବା ଧର୍ମର ସୁରକ୍ଷା ଯୋଗୁଁ ନୁହେଁ ବରଂ ପୋଲିସ ଓ ପ୍ରଶାସନ ବ୍ୟବସ୍ଥା ପ୍ରତି ଚୋର, ଗୁଣ୍ଡା ଓ ଡ଼ାକୁମାନଙ୍କ ମନରେ ରହୁଥିବା ଭୟ ଯୋଗୁଁ ।

*********

# ଚମତ୍କାରର ରହସ୍ୟ

ସୃଷ୍ଟିର ଆରମ୍ଭରୁ ମାନବ ନିଜର ସୀମିତ ଶକ୍ତି ଓ ଜ୍ଞାନ ଯୋଗୁଁ ହୀନମନ୍ୟତାର ଶିକାର ହୋଇଆସିଛି । ଏଇଥିପାଇଁ, ସେ ସର୍ବଦା ଅସହାୟ ଜନିତ ଦୁଃଖ ଅନୁଭବ କରିଆସିଛି । ସେ ପକ୍ଷୀ ଭଳି ଆକାଶରେ ଉଡି ପାରୁନଥିଲା, ମାଛ ଭଳି ଗଭୀର ପାଣିରେ ପହଁରି ପାରୁନଥିଲା । ହାତୀ ଭଳି ତା' ଦେହରେ ଶକ୍ତି ନଥିଲା କିମ୍ବା ଚିତାବାଘ ଭଳି ଫୁର୍ତ୍ତି ନଥିଲା । ଏହିସବୁ କାରଣରୁ ସ୍ୱାଭାବିକ ଭାବେ, ନିଜଠାରୁ ଅଧିକ କ୍ଷମତା ଥିବା ପଶୁମାନଙ୍କୁ ସେ ଈର୍ଷା କରୁଥିଲା । ନିଜକୁ ଦୁର୍ବଳ ବା ହୀନ ଅନୁଭବ କରୁଥିବା ଯୋଗୁଁ, ସେ ତଥାକଥିତ ଦେବୀ ଦେବତାଙ୍କ କାଳ୍ପନିକ ଅସ୍ତିତ୍ୱକୁ ଜନ୍ମଦେଇ, ପୂଜା ଓ ପ୍ରାର୍ଥନା ଆରମ୍ଭ କରିଦେଲା । ପରବର୍ତ୍ତୀ କାଳରେ, ତା'ମନରେ ଅତିମାନବୀୟ ଶକ୍ତି ପ୍ରାପ୍ତ କରିବାର ଆକାଂକ୍ଷା ଜାଗ୍ରତ ହେଲା ।

ଛୁଆଟିଏ ଜନ୍ମଗ୍ରହଣ କଲାପରେ ଧିରେ ଧିରେ ତା' ଚାରିପାଖର ଦୁନିଆ, ସହିତ ପରିଚିତ ହେବାକୁ ଚେଷ୍ଟା କରେ । ଯାହା ସେ ଶୁଣେ ବା ଦେଖେ ସବୁ କିଛି, ତା'ପାଇଁ ଆଶ୍ଚର୍ଯ୍ୟଜନକ ଏବଂ ରହସ୍ୟମୟ ଲାଗେ । ବଡ଼ଲୋକମାନେ, ଛୁଆ ମନରେ ଜ୍ଞାନ ଦେବାପାଇଁ, ଅନେକ ବିଚିତ୍ର ଶୈଳୀ ଅବଲମ୍ବନ କରିଥାନ୍ତି । ବସ୍ତୁ ବା ଘଟଣା ସମ୍ପର୍କରେ, ପ୍ରକୃତ ସତ୍ୟ ଛୁଆ ବୁଝି ପାରିବନି ଭାବି, ତା' କୌତୁହଳକୁ ଶାନ୍ତ କରିବାପାଇଁ ଅନେକ କାଳ୍ପନିକ କାହାଣୀ କହନ୍ତି । ସେଥିପାଇଁ ପିଲାଙ୍କ କାହାଣୀରେ, ବିଚିତ୍ର ତଥା ଚମତ୍କାରୀ ଘଟଣା ସବୁ ଭରି ରହିଥାଏ । ବଡ଼ମାନଙ୍କଠାରୁ ଏଭଳି କାହାଣୀ ଶୁଣି କିମ୍ବା ବହିରୁ ପଢି ଧିରେ ଧିରେ ତା'ର ଅବଚେତନ ମନରେ ଅନେକ ଅବାସ୍ତବ ଚିତ୍ରର ଛାପ ପଡ଼ିଯାଏ, ଯାହା ବୟସ୍କ ହେବା ପରେ ମଧ ଲିଭି ପାରେନାହିଁ ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି - ସତରେ କ'ଣ "ଚମତ୍କାର" ଦ୍ୱାରା କୌଣସି କାମ ହେବାସମ୍ଭବ ? ସତରେ କ'ଣ ଚମତ୍କାରୀ କାର୍ଯ୍ୟ କରିପାରୁଥିବା ବ୍ୟକ୍ତି ଅନ୍ୟମାନଙ୍କଠାରୁ ମହାନ ? ସତରେ କ'ଣ ଚମତ୍କାର ପ୍ରଦର୍ଶନ ମାନବ ସମାଜପାଇଁ ଉପାଦେୟ ?
ଏଥିପାଇଁ ଆମର ଦୃଷ୍ଟିକୋଣ କିଭଳି ହେବା ଉଚିତ ଆସନ୍ତୁ ଦେଖିବା - ପ୍ରାଚୀନ କାଳରେ ଲୋକେ ଭାବୁଥିଲେ - ତଥାକଥିତ ତନ୍ତ୍ର, ମନ୍ତ୍ର ଦ୍ୱାରା ସବୁକିଛି କରିବା ସମ୍ଭବ । ଯଦିଓ ତାହା

ବାରମ୍ବାର ଅସଫଳ ହେଉଥିଲା । ତଥାପି ଲୋକେ ଭାବୁଥିଲେ, ମନ୍ତ୍ର ପାଠରେ କିଛି ଦୋଷ ବା ତ୍ରୁଟି ରହିଯାଉଛି ।

ଆଧୁନିକ ଯୁଗ ଆସିବା ପରେ, ପ୍ରମାଣିତ ହେଲା ଯେ ତନ୍ତ୍ର ମନ୍ତ୍ର ବଳରେ, କିଛି ବି କରିବା ସମ୍ଭବ ନୁହେଁ ବରଂ ବିଜ୍ଞାନ ବଳରେ, ସବୁକିଛି କରିବା ସମ୍ଭାବନା ଅଛି । ପ୍ରାଚୀନ କାଳରେ ଯାହା ଚମତ୍କାରୀ ଘଟଣା ମନେ ହେଉଥିଲା, ଆଜି ତାହା ଅତି ସାଧାରଣ ଘଟଣାରେ ପରିବର୍ତ୍ତନ ହୋଇସାରିଲାଣି । ମଣିଷ ଆଜି ଉଡ଼ାଜାହାଜ ଦ୍ୱାରା ଆକାଶରେ, ପକ୍ଷୀଠାରୁ ବହୁତ ଅଧିକ ବେଗରେ ଉଡି ଯାଇପାରୁଛି । ସମୁଦ୍ରର ଗଭୀର ଜଳରେ, ଜଳଜାହାଜ ଦ୍ୱାରା ମାଛଠାରୁ ଅଧିକ ବେଗରେ, ବହୁତ ଦୂର ପର୍ଯ୍ୟନ୍ତ ଯାତ୍ରା କରି ପାରୁଛି । ଉଡ଼ାଜାହାଜ, ଜଳଜାହାଜ, ଟେଲିଭିଜନ, ମୋବାଇଲ ଫୋନ, ଇଣ୍ଟରନେଟ ଇତ୍ୟାଦି କାହାରି ପାଇଁ, ଆଜି ଚମତ୍କାରୀ ବସ୍ତୁ ହୋଇ ରହିନାହିଁ ।

ଆମେ ଟିକିଏ ଗଭୀର ଭାବେ ଚିନ୍ତାକଲେ, ବୁଝି ପାରିବା ଯେ ସୈଦ୍ଧାନ୍ତିକ ଭାବେ ସମ୍ଭବ ଲାଗୁଥିବା, କୌଣସି ବସ୍ତୁ ବ୍ୟବହାରିକ କ୍ଷେତ୍ରରେ ଅସ୍ତିତ୍ୱ ବା ସ୍ଥିତିକୁ ପ୍ରମାଣିତ କରିଥାଏ । ପର୍ଯ୍ୟାପ୍ତ ପ୍ରମାଣ ବିନା କୌଣସି ତଥ୍ୟକୁ କେବଳ ବିଶ୍ୱାସର ଆଧାରରେ, ମାନିନେବା ହେଉଛି, ମଣିଷର ବୌଦ୍ଧିକ ଦାସତ୍ୱର ପରିଚାୟକ ।

ସୀମିତ ବା ଅଧୁରା ଜ୍ଞାନ ଯୋଗୁଁ ଯେଉଁ ଘଟଣା ଚମତ୍କାର ଭଳି ମନେ ହେଉଛି, ସେହି ଘଟଣା ପାଇଁ ଦାୟୀ କାରଣକୁ, ବୁଝିବାପାଇଁ ଆଉ କିଛି ଜ୍ଞାନ ହାସଲ କଲେ ସହଜରେ ବୁଝିହେବ । ମୋବାଇଲ ଓ ଟେଲିଭିଜନ ବିଷୟରେ ଯିଏ ଅଳ୍ପ କିଛି ଜାଣିଛି, ତା' ପାଇଁ ଏଗୁଡିକ ଚମତ୍କାର ହୋଇପାରେ । ଶବ୍ଦ ଓ ଚିତ୍ରକୁ ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ସ୍ଥାନାନ୍ତରିତ କରିବାପାଇଁ, ରେଡ଼ିଓ ୱେଭ (ତରଙ୍ଗ) ଏକ ମାଧମ ରୂପେ ବ୍ୟବହାର ହେଉଛି ବୋଲି ବୁଝାଇ ଦେଲେ, ସେ ଆଉ ଚମତ୍କାର ବୋଲି କହିବ ନାହିଁ । ଏହା କେବଳ ବିଜ୍ଞାନ ଦ୍ୱାରା ସମ୍ଭବ ହୋଇଛି ।

ଆଜି ବି କିଛି ଧର୍ମଗୁରୁ ଓ ଅହେତୁକ ଶ୍ରଦ୍ଧା ରଖୁଥିବା ବ୍ୟକ୍ତିମାନଙ୍କ ଦ୍ୱାରା ଅଦ୍ଭୁତ ଘଟଣା ଘଟୁଥିବା ଦାବି କରାଯାଉଛି । ଯାହା ଆଧୁନିକ ବିଜ୍ଞାନ ପାଖରେ ବୁଝିବାପାଇଁ କୌଣସି ପ୍ରାମାଣିକ ତଥ୍ୟ ନାହିଁ । ଯଥା : ମନ୍ତ୍ର ଶକ୍ତି ବଳରେ ଗୋଟିଏ ଗଛ ଅନ୍ୟ ସ୍ଥାନକୁ ଘୁଞ୍ଚି

ଯାଇପାରେ, ଜଣେ ସିଦ୍ଧପୁରୁଷ ପାଣି ଉପରେ ଅକ୍ଳେଶରେ ଚାଲିଯାଇପାରେ, ଜଣେ ବାବା ପାଣିକୁ ପେଟ୍ରୋଲ ଏବଂ ଜଣେ ଈଶ୍ୱରଙ୍କ ପୁତ୍ର ପାଣିକୁ ମଦ୍ୟରେ ପରିଣତ କରିଦେଇଥିଲେ ।

ଯେଉଁମାନେ ଏଭଳି ଘଟଣା ଘଟିବା ସମ୍ଭବ ବୋଲି ଦାବି କରୁଛନ୍ତି, ସେମାନଙ୍କୁ ଯଦି ପ୍ରଶ୍ନ କରାଯାଏ – "ଆପଣ ନିଜ ଆଖିରେ ଏସବୁ ଦେଖିଛନ୍ତିକି ?" ସେମାନେ କହିବେ – "ଆମେ ଲୋକମାନଙ୍କ ଠାରୁ ଶୁଣିଛୁ କିମ୍ବା ଅମୁକ ବହିରେ ପଢ଼ିଛୁ ।" ଆଜିକାଲି କହୁଛନ୍ତି ଇଣ୍ଟର୍ନେଟର 'ୟୁଟ୍ୟୁବ' ରେ ଏହି ସବୁଦୃଶ୍ୟ ସ୍ପଷ୍ଟ ଭାବେ ଦେଖିବାକୁ ମିଳୁଛି । ସେମାନେ ଜାଣି ନାହାନ୍ତି ଯେ ୟୁଟ୍ୟୁବରେ କେତେ ସହଜରେ, ନିଜେ ଅନେକ କାଳ୍ପନିକ ଚିତ୍ର ତିଆରିକରି ଅବିଶ୍ୱାସନୀୟ ଘଟଣାକୁ ରୂପ ଦିଆ ଯାଇପାରୁଛି । ଦେଖିଲେ ନିହାତି ସତ ଲାଗୁଛି ।

ଆମେ ସେମାନଙ୍କ କଥାକୁ ବିଶ୍ୱାସ କରିବା ପୂର୍ବରୁ କିଛି ସନ୍ଦେହକୁ ଦୂର କରିବାପାଇଁ ଭାବୁଛୁ – "ଯଦି ଉପରୋକ୍ତ ଘଟଣା ଗୁଡିକ ସତ, ତେବେ କେବଳ ଥରେ ବା ଦୁଇଥର କାହିଁକି ଘଟିଛି ? ବାରମ୍ବାର କିମ୍ବା ଅନେକ ଲୋକ ଦେଖିବା ଭଳି, ଖୋଲା ସ୍ଥାନରେ କାହିଁକି ଘଟୁନାହିଁ ?" ଯଦି ସତରେ ଏଗୁଡିକ ସର୍ବସମ୍ମୁଖରେ ପ୍ରଦର୍ଶନ ହୋଇପାରିବ, ତେବେ 'ଚମତ୍କାର' ହେବା ସମ୍ଭବ ବୋଲି ସମସ୍ତେ ମାନିଯିବେ । ମଜାକଥା ହେଉଛି ଯେ ଆଜି ପର୍ଯ୍ୟନ୍ତ ଦୁନିଆର କୌଣସି ତଥାକଥିତ ସିଦ୍ଧପୁରୁଷ ଚମତ୍କାର ବିଦ୍ୟାକୁ ପ୍ରମାଣିତ କରିବାପାଇଁ, ରାଜି ହୋଇନାହାନ୍ତି ।

ସାଧାରଣତଃ ଏହିଭଳି ଦାବି କେବଳ ତଥାକଥିତ ସିଦ୍ଧପୁରୁଷ ଏବଂ ସ୍ୱୟଂଭୂ ଭଗବାନମାନେ କରିଥାନ୍ତି । ଭାରତୀୟମାନଙ୍କ ଆଧ୍ୟାତ୍ମିକ ମନୋବୃତ୍ତି ଯୋଗୁଁ ଯେକୌଣସି କଥାକୁ ଧର୍ମ ସହିତ ଯୋଡ଼ିଦେଲେ, ସେମାନେ ତର୍କବୁଦ୍ଧି ଘରେ ତାଲା ଝୁଲାଇ ଦେଇ, ଅବିଳମ୍ବେ ବିଶ୍ୱାସ କରିଯାଆନ୍ତି । ଏହି ଦୁର୍ବଳତାର ଫାଇଦା ଉଠେଇ, ଧର୍ମଗୁରୁମାନେ କୌଣସି ପ୍ରମାଣ ନଦେଇ ମଧ୍ୟ କେବଳ ମୌଖିକ ଭାଷାରେ, ଦାବିକରି ଜନମାନସକୁ ପ୍ରଭାବିତ କରିପାରନ୍ତି । ସାଧାରଣ ଜନତା ଧର୍ମଗୁରୁମାନଙ୍କର, ଦାବିକୁ ବିଶ୍ୱାସ କରି, ସେମାନଙ୍କୁ ମହାତ୍ମା, ସିଦ୍ଧପୁରୁଷ ଆଦି କହି ସମ୍ମାନ ଦିଅନ୍ତି, ପୂଜା ବି କରନ୍ତି ।

ଏଇଠି ଆଉ ଏକ ପ୍ରଶ୍ନ ବି ଉଠୁଛି – "କ'ଣ ପ୍ରତ୍ୟେକ ସିଦ୍ଧପୁରୁଷଙ୍କ ପାଖରେ କିଛି ଚମତ୍କାରୀ ଶକ୍ତି ରହିବା ନିହାତି ଆବଶ୍ୟକ ଗୁଣ ?" ଏହି ତଥ୍ୟକୁ ସମର୍ଥନ କରୁଥିବା ଉଦାହରଣ କୌଣସି ଧର୍ମଶାସ୍ତ୍ରରେ ତ ଦେଖିବାକୁ ମିଳୁନି । ଭଗବତ ଗୀତାର ଦ୍ୱାଦଶ ଅଧ୍ୟାୟରେ, ଆଦର୍ଶପୁରୁଷର ସଂଜ୍ଞା ଯାହା ଲେଖା ଯାଇଛି, ସେଥିରେ ଚମତ୍କାର ଶକ୍ତି ରହିବା

କଥା ଲେଖା ଯାଇନାହିଁ । "ଯେଉଁ ବ୍ୟକ୍ତି କାହାରି ପ୍ରତି ଦ୍ୱେଷ କରେନାହିଁ, ସମସ୍ତଙ୍କ ସହିତ ମିତ୍ରଭାବ ରଖେ, ସମସ୍ତଙ୍କ ପ୍ରତି ଦୟା ପ୍ରଦର୍ଶନ କରେ, ଅହଂକୁ ତ୍ୟାଗ କରିଥାଏ, ସୁଖ ଦୁଃଖରେ ସମାନ ବ୍ୟବହାର କରେ, ଯିଏ କ୍ଷମାଶୀଳ, ସଂଯମୀ, ଶାନ୍ତ, ସନ୍ତୁଷ୍ଟ, ଦୃଢ଼ ନିଶ୍ଚୟୀ ଆଦି ସମସ୍ତ ସୁଗୁଣର ଅଧିକାରୀ, ଯେଉଁ ବ୍ୟକ୍ତି ମନ ଓ ବୁଦ୍ଧି ସହିତ, ଈଶ୍ୱରଙ୍କୁ ସମର୍ପଣ କରିଦେଇଥାଏ, ସେ ହିଁ ଆଦର୍ଶପୁରୁଷ ବା ଶ୍ରେଷ୍ଠ ମାନବ ।" ବୋଲି ଲେଖା ଯାଇଛି ।

ଆମର ଅନ୍ୟାନ୍ୟ ଦର୍ଶନଶାସ୍ତ୍ର, ନୀତିଶାସ୍ତ୍ର କିମ୍ବା ବିଦେଶର କୌଣସି ଶାସ୍ତ୍ରରେ ଦେଖିବାକୁ ମିଳୁନି ଯେ ସିଦ୍ଧପୁରୁଷ ହେବାପାଇଁ ଚମତ୍କାରୀ ଶକ୍ତି ଏକ ଆବଶ୍ୟକ ଗୁଣ । ଏ ଯୁଗରେ କିନ୍ତୁ ଏହାର ବିପରୀତ କଥା ଦେଖିବାକୁ ମିଳୁଛି । କୌଣସି ପ୍ରକାର ସୁଗୁଣ ନଥାଇ ବି ଯଦି ତା' ପାଖରେ ଚମତ୍କାରୀ ଶକ୍ତି ଅଛି, ତେବେ ଜଣେ ଭଣ୍ଡବ୍ୟକ୍ତି, କୋଟି କୋଟି ଲୋକଙ୍କ ପାଇଁ, ସିଦ୍ଧପୁରୁଷ ହୋଇ ଯାଆନ୍ତି ।

ଚମତ୍କାର ସମ୍ପର୍କରେ ଗୌତମ ବୁଦ୍ଧଙ୍କ ଗୋଟିଏ ଛୋଟ କାହାଣୀ ଏଠାରେ ଉଲ୍ଲେଖ କରିବା ଉଚିତ ହେବ । ଦିନେ ଗୌତମୀ ନାମକ ଜଣେ ମହିଳା, କୋଳରେ ମୃତ ଶିଶୁକୁ ନେଇ, ବୁଦ୍ଧଙ୍କ ପାଖକୁ ଆସିଲା । ସେ ବିଶ୍ୱାସ କରୁଥିଲା ଯେ ବୁଦ୍ଧଦେବ ଜଣେ ସିଦ୍ଧପୁରୁଷ ଏବଂ ସେ ଚାହିଁଲେ ତା'ର ମୃତ ଶିଶୁଟି ଜୀବନ ଫେରିପାଇବ । ସେ କାନ୍ଦି କାନ୍ଦି ବୁଦ୍ଧଙ୍କୁ ଅନୁରୋଧ କଲା - "ମୋ ପୁଅକୁ ଆପଣ ବଞ୍ଚେଇ ଦିଅ ।" ବୁଦ୍ଧ ଶାନ୍ତ ଚିତ୍ତରେ କହିଲେ - "ହଁ, ମୁଁ ତୁମର ପୁଅକୁ ବଞ୍ଚେଇ ଦେବି କିନ୍ତୁ ତୁମେ ପ୍ରଥମେ ଏହି ନଗରକୁ ଯାଅ, ଭିକ୍ଷାମାଗି ମୁଠାଏ ସୋରିଷ ଆଣ । କିନ୍ତୁ ସୋରିଷ ଏମିତି ଘରୁ ଆଣିବ, ଯେଉଁ ଘରେ କେହି କେବେ, ମୃତ୍ୟୁ ବରଣ କରି ନଥିବେ ।" ମହିଳା ଜଣକ ଆଶାବାଦୀ ମନନେଇ, ନଗର ଭିତରେ ଦିନସାରା ମୁଠାଏ ସୋରିଷ ପାଇଁ, ଘୁରି ବୁଲିଲା କିନ୍ତୁ କେବେ କେହି ମୃତ୍ୟୁ ବରଣ କରିନଥିବା ଘରଟିଏ ପାଇଲା ନାହିଁ । ଶେଷରେ ସେ ବୁଦ୍ଧଦେବ କହିଥିବା ସର୍ତ୍ତର ଅର୍ଥ ବୁଝି ପାରିଲା ଯେ "ମୃତ୍ୟୁ ଏକ ଚରମ ସତ୍ୟ" । ଏଠାରେ ବୁଦ୍ଧଙ୍କୁ ଚମତ୍କାର ପ୍ରଦର୍ଶନ କରିବାର ସୁବର୍ଣ୍ଣ ସୁଯୋଗ ମିଳିଥିଲା କିନ୍ତୁ ସେ ଜାଣିଥିଲେ - ଚମତ୍କାର ହୋଇପାରିବ ନାହିଁ । ଅଥଚ ଆମ ଦେଶରେ, ଅନେକ ବାବା ଓ ମାତାଙ୍କର ଚମତ୍କାରୀ କାହାଣୀ ବିଭିନ୍ନ ପତ୍ରିକା, ଟିଭି, ଓ ସିନେମାରେ ବହୁଳ ଭାବେ ପ୍ରଚାରିତ ହେଉଛି । ସେଗୁଡିକ ପଢି ଓ ଦେଖି ଶିକ୍ଷିତ ଲୋକମାନେ ମଧ ଭ୍ରମିତ ହୋଇ ଯାଉଛନ୍ତି । ଆଉ ଏକ ପ୍ରଶ୍ନ ଉଠୁଛି - ତଥାକଥିତ ଚମତ୍କାର ପ୍ରଦର୍ଶନର ଉପାଦେୟତା କ'ଣ ପାଇଁ ? ପ୍ରତ୍ୟେକ ଧର୍ମଗୁରୁ ଦାର୍ଶନିକ

ନୀତିଶାସ୍ତ୍ର ପଢିବାକୁ ଗୁରୁତ୍ୱ ଦେଇ କହିଥାନ୍ତି - "ପରୋପକାରାୟ ପୁଣ୍ୟାୟ, ପାପାୟ ପରପୀଡ଼ନେମ" ଆମେ କିନ୍ତୁ ଦେଖୁଛୁ, ଚମତ୍କାର ଦ୍ୱାରା ମାନବ ସମାଜର କୌଣସି ହିତ ସାଧନ ହେଉନାହିଁ ।

ଆମଦେଶର ଜଣେ ବିଖ୍ୟାତ ସ୍ୱୟଂଭୂ ଭଗବାନ ବିଷୟରେ ପ୍ରଚାରିତ ଏକ ଅବିଶ୍ୱାସନୀୟ ଗାଳ୍ପ ଗପ ଦେଖନ୍ତୁ – "ବାବା ଥରେ ତାଙ୍କର କାରରେ ଯାଉଥିବା ବେଳେ, ବାଟରେ ଗାଡିର ପେଟ୍ରୋଲ ଶେଷ ହୋଇଗଲା । ସେ ଡ୍ରାଇଭରକୁ କହିଲେ - କୌଣସି ଜାଗାରୁ ଜାରିକେନ ଭରି ପାଣି ନେଇଆସ । ଡ୍ରାଇଭର ପାଣି ଆଣିବା ପରେ ବାବା ସେଥିରେ ନିଜର ଆଙ୍ଗୁଠି ବୁଡେଇ ଦେଲେ, ପାଣି ତକ ପେଟ୍ରୋଲ ହୋଇଗଲା । ଏହା ସତ ଘଟଣା ବୋଲି ତାଙ୍କର ଅନ୍ଧଭକ୍ତମାନେ ଆଜି ବି ବିଶ୍ୱାସ କରୁଛନ୍ତି ।

ଏହା ଯଦି ସତ, ତେବେ ପ୍ରଶ୍ନ ଉଠୁଛି - ସେ ତାଙ୍କ ଗାଡ଼ିରେ ପେଟ୍ରୋଲ କିଣି ପୂରାଉଥିଲେ କାହିଁକି ? ବିନା ପେଟ୍ରୋଲରେ ବି ତ ତାଙ୍କ ଗାଡି ଚାଲିବା କଥା କିମ୍ବା ସବୁବେଳେ ପାଣି ହିଁ ପୂରେଇ, ଆଙ୍ଗୁଠି ବୁଡେଇ ଦେଉ ନଥିଲେ କାହିଁକି ? ଦ୍ୱିତୀୟରେ ଆମ ଦେଶରେ ପେଟ୍ରୋଲ ଦର ଏତେ ଅଧିକ ଯେ ଲୋକମାନେ ହନ୍ତସନ୍ତ ହେଉଛନ୍ତି । ସେ ତାଙ୍କର ଚମତ୍କାରୀ ହାତର ସବୁ ଆଙ୍ଗୁଠି ଯଦି କୌଣସି ନଦୀ ଓ ପୋଖରୀରେ ବୁଡେଇ ଦିଅନ୍ତେ, ତେବେ ପେଟ୍ରୋଲ ସମସ୍ୟା ରହନ୍ତା ନାହିଁ ।

ଆଉ ଜଣେ ସିଦ୍ଧମାତାଙ୍କ ବିଷୟରେ କୁହା ଯାଉଛି - ସେ ଭାରି ଗରିବ ଘରର ଝିଅ ଥିଲେ, ତେଣୁ ତାଙ୍କୁ ଠାକୁରଙ୍କ ଆଗରେ ଦୀପଜାଳିବାକୁ ତେଲ ମିଳୁ ନଥିଲା । ସେ ଠାକୁରଙ୍କୁ ଏହି ଦୁଃଖ ଜଣାଇବାରୁ ଠାକୁର କହିଲେ - "ତୁ ସମୁଦ୍ର ଜଳକୁ ଦୀପରେ ରଖି ବତି ଜଳାଇ ପାରିବୁ ।" ସେ ପିଲାଟି ବେଳୁ ସେହିଭଳି ଦୀପରେ ସମୁଦ୍ର ପାଣି ରଖି ବତୀ ଜଳାଉଥିଲେ ।

ଏକଥା ଯଦି ସତ, ତେବେ ସେମିତି ଚମତ୍କାର ସବୁ ମଠ ଓ ମନ୍ଦିରରେ କରିଦେବା ଉଚିତ ଥିଲା । କାରଣ ଆଜିର ସମୟରେ ଦେଶର ହଜାର ହଜାର ମନ୍ଦିରରେ ଅଜସ୍ର ତେଲ ଓ ଘିଅ କେବଳ ଦୀପ ଜଳାଇବା ପାଇଁ ଖର୍ଚ୍ଚ ହେଉଛି ।

ଅତୀତର ଆହୁରି ଅନେକ ବ୍ୟକ୍ତିଙ୍କ ଉଦାହରଣ ଆମେ ପାଇ ପରିବା, ଯେଉଁମାନେ ସମସ୍ତେ ମାନବୀୟ ଶକ୍ତିର ସୀମା ଭିତରେ ରହି, ମଧ୍ୟ ଅନେକ ଆଶ୍ଚର୍ଯ୍ୟଜନକ କାମ କରି ଯାଇଛନ୍ତି । ଆମ ଦେଶର ମହାତ୍ମା ଗାନ୍ଧୀ ହେଉଛନ୍ତି ଏକ ବିଶିଷ୍ଟ ଉଦାହରଣ । ସେ ନିଜର ଏକ

ବିଶେଷ ଚିନ୍ତନଶୈଳୀ ଓ ଆଦର୍ଶନୀୟ ଅହିଂସା ମାର୍ଗ ଦ୍ୱାରା ବ୍ରିଟିଶ ସାମ୍ରାଜ୍ୟକୁ ଦୋହଲେଇ ଦେଇ ପାରିଥିଲେ । ଓଡ଼ିଶାରେ ସେହିଭଳି ଗୋପବନ୍ଧୁ, ମଧୁସୂଦନ ଆଦି ମହାନ ବ୍ୟକ୍ତିମାନଙ୍କ ପାଖରେ କୌଣସି ଚମତ୍କାରୀ ଶକ୍ତି ନଥାଇ ମଧ ସମାଜର ଅନେକ ହିତ ସାଧନ କରି ଯାଇଛନ୍ତି ।

ବାବାମାନଙ୍କ ଦ୍ୱାରା ପ୍ରଦର୍ଶିତ ତଥାକଥିତ ଚମତ୍କାର ଖେଳ, ଧର୍ମ ନାମରେ ଖୁବ ଚାଲିଛି । ଯଦିଓ ତା'ଠାରୁ ଆହୁରି ଆଶ୍ଚର୍ଯ୍ୟଜନକ ଖେଳ ବିଭିନ୍ନ ଯାଦୁଗରମାନେ ଦେଖାଇ ପାରୁଛନ୍ତି, ସେମାନେ କେବେ ଏହାକୁ ଦୈବୀ ଚମତ୍କାର ବୋଲି ଦାବି କରନ୍ତି ନାହିଁ କିମ୍ବା ନିଜକୁ ଧର୍ମଗୁରୁ ବୋଲି କହନ୍ତି ନାହିଁ । ସେମାନେ ଲୋକମାନଙ୍କ ସୁସ୍ଥ ମନୋରଞ୍ଜନ ପାଇଁ ପ୍ରଦର୍ଶନ କରିଥାନ୍ତି । ଦରକାର ପଡିଲେ ଅନ୍ୟକୁ ଶିଖାଇବା ପାଇଁ ଏହାର କୌଶଳ ମଧ କହିଦିଅନ୍ତି । ବାବାମାନେ କିନ୍ତୁ ନିଜର ବିଦ୍ୟାକୁ ସବୁବେଳେ ଜନତାଙ୍କ ଠାରୁ ଲୁଚେଇ ରଖନ୍ତି । ପରୀକ୍ଷା କରିବାକୁ ତ ସେମାନେ ଜମା ରାଜି ହୁଅନ୍ତିନାହିଁ ।

ଦୁନିଆରେ ବିଭିନ୍ନ ହେତୁବାଦୀଙ୍କ ଦ୍ୱାରା ସିଦ୍ଧ ପୁରୁଷ, ବାବା, ଜ୍ୟୋତିଷ, ତାନ୍ତ୍ରିକମାନଙ୍କୁ ଚ୍ୟାଲେଞ୍ଜ କରାଯାଇଛି । ସେମାନଙ୍କ ଆଗରେ ଚମତ୍କାର ପ୍ରଦର୍ଶନ କରି କୋଟି କୋଟି ଟଙ୍କାର ପୁରସ୍କାର ଜିତିବାର ପ୍ରଲୋଭନ ଦେଇଥିଲେ ମଧ ଆଜି ପର୍ଯ୍ୟନ୍ତ, କେହି ଜଣେ ମଧ ଚ୍ୟାଲେଞ୍ଜକୁ ସ୍ୱୀକାର କରିନାହାନ୍ତି । କାରଣ ସେମାନେ ଭଲକରି ଜାଣନ୍ତି - ତାଙ୍କର ତଥାକଥିତ ଚମତ୍କାର ପଛରେ କୌଣସି ଦୈବୀ ଶକ୍ତି ନାହିଁ, ହସ୍ତଚାଳନ ବିଦ୍ୟା କିମ୍ବା ବୈଜ୍ଞାନିକ ଟ୍ରିକ ଦ୍ୱାରା, ସେମାନେ ଲୋକମାନଙ୍କୁ ବୋକା ବନେଇ ପାରୁଛନ୍ତି । ହେତୁବାଦୀଙ୍କ ଆଗରେ ତାଙ୍କର ଅସଲ ଚେହେରା ଧରା ପଡିଯିବାର ଭୟରେ କେହି ଆଗେଇ ଆସୁ ନାହାନ୍ତି ।

ଯେଉଁ ଧର୍ମଗୁରୁମାନେ ଚମତ୍କାରୀ ଶକ୍ତି ଧାରଣ କରିଥିବା ଦାବି କରୁଛନ୍ତି, ସେମାନେ ଆଜି ପର୍ଯ୍ୟନ୍ତ ମଣିଷ ସମାଜର କୌଣସି ହିତ ସାଧନ କରିନାହାନ୍ତି । ଚମତ୍କାର ପ୍ରଦର୍ଶନ କରି, କେବଳ ନିଜର ବ୍ୟାଙ୍କ ବ୍ୟାଲେନ୍ସ ବଢ଼ାଇଛନ୍ତି । ଭକ୍ତମାନଙ୍କ ଦାନ ଦେଉଥିବା ଧନ ଅଧିକ ହୋଇଗଲେ, ସେଥିରୁ ଅଳ୍ପ କିଛି ଖର୍ଚ୍ଚ କରି, କେତୋଟି ସ୍କୁଲ, କଲେଜ କିମ୍ବା ଡାକ୍ତରଖାନା ଖୋଲିଦେଲେ, ଜନତା ଖୁସିରେ ସେମାନଙ୍କ ଗୁଣଗାନ କରନ୍ତି । ସଂଗ୍ରହ ହେଉଥିବା ଧନର ପରିମାଣ କେତେ ? ସେଥିରୁ ଜନହିତରେ ଖର୍ଚ୍ଚ ହେଉଛି କେତେ ? ବାକି ଟଙ୍କା ଯାଉଛି କୁଆଡେ ?

********

# ଭ୍ରଷ୍ଟାଚାରର ଭିତ୍ତିଭୂମିରେ ଧର୍ମର ଭୂମିକା

ଆଜିର ସମୟରେ ଦୁନିଆର ସମସ୍ତ ଦେଶ ଅପେକ୍ଷା, ଭାରତରେ ସବୁଠାରୁ ଅଧିକ ଭ୍ରଷ୍ଟାଚାର ହେଉଥିବା ଶୁଣା ଯାଉଛି । ଭ୍ରଷ୍ଟାଚାରର କାରଣ ସମ୍ପର୍କରେ ନାନା ମୁନିଙ୍କର ନାନା ମତ ପ୍ରକାଶ ପାଉଛି । କେତେକ କହନ୍ତି - "ଆମ ଦେଶର ଦାରିଦ୍ର୍ୟତା ହେଉଛି ଭ୍ରଷ୍ଟାଚାରର କାରଣ ।"

ଆମ ମନରେ ସ୍ୱତଃ ପ୍ରଶ୍ନ ଉଠୁଛି - "ଦାରିଦ୍ର୍ୟର କାରଣ କଅଣ ? ଆମ ଦେଶରେ ପ୍ରାକୃତିକ ସାଧନର ଅଭାବ ତ ନାହିଁ , ବରଂ ପ୍ରାକୃତିକ ସାଧନ ଦୃଷ୍ଟିରୁ ଭାରତ ଅନ୍ୟାନ୍ୟ ଦେଶ ତୁଳନାରେ ଯଥେଷ୍ଟ ଉପରେ ଅଛି । ଦୁନିଆର 15 ପ୍ରତିଶତ ପାଣି, 25 ପ୍ରତିଶତ ଲୁହା, 30 ପ୍ରତିଶତ ୟୁରେନିୟମ ସହିତ ବୃକ୍ଷ ଲତା ଓ ଶସ୍ୟ ଉତ୍ପାଦନ ପାଇଁ ଛଅଟି ଋତୁର ଚକ୍ର ଯେଉଁ ଦେଶରେ ଚାଲିଛି, ସେହି ଦେଶରେ ଦାରିଦ୍ର୍ୟ ରହିଛି କାହିଁକି ? ଏହାର ଅସଲ କାରଣ ଅନୁସନ୍ଧାନ କରିବା ଉଚିତ ନୁହେଁକି ?

ଆମେ କିନ୍ତୁ ଏଠାରେ ଦାରିଦ୍ର୍ୟର ଅନ୍ୟ କାରଣ ଅନୁସନ୍ଧାନ କରିବା ଆବଶ୍ୟକ ମନେ କରୁନୁ । କାରଣ ଭ୍ରଷ୍ଟାଚାର ପାଇଁ ଦାରିଦ୍ର୍ୟ ଏକ ଅନିବାର୍ଯ୍ୟ କାରଣ ନୁହେଁ କିମ୍ବା ଦାରିଦ୍ର୍ୟ ଦ୍ୱାରା ଭ୍ରଷ୍ଟାଚାର ବୃଦ୍ଧି ପାଇବାର ସମ୍ଭାବନା ସର୍ବଦା ନଥାଏ । ଦାରିଦ୍ର୍ୟ ବିନା ମଧ ସମାଜରେ ଭ୍ରଷ୍ଟାଚାର ବୃଦ୍ଧି ପାଇବା ସମ୍ଭବ ହୋଇପାରେ ।

ଭ୍ରଷ୍ଟାଚାର ସମ୍ପର୍କରେ କିଛି ଧର୍ମଗୁରୁମାନେ ପ୍ରବଚନ ମାଧମରେ ଗୁରୁତ୍ୱ ଦେଇ କହିଥାନ୍ତି - "ଲୋକମାନଙ୍କ ମନରୁ ସ୍ୱର୍ଗ, ନର୍କ, ପୁନର୍ଜନ୍ମ, ଭାଗ୍ୟ, ଭଗବାନ, ପାପ ଓ ପୂଣ୍ୟ ସବୁ ଉଭେଇ ଗଲାଣି । ସେଇଥିପାଇଁ ଦେଶରେ ଭ୍ରଷ୍ଟାଚାର ବୃଦ୍ଧି ପାଉଛି ।"

ଆସନ୍ତୁ ବିଚାର କରିବା, ଏହା କେତେଦୂର ସତ୍ୟ ?

ଧର୍ମଗୁରୁମାନେ ପ୍ରୟତଃ ଧର୍ମଶାସ୍ତ୍ର ହିଁ ପଢ଼ିଥାନ୍ତି । ସେମାନେ ଯଦି ଭାରତୀୟ ଇତିହାସ ମଧ ପଢୁଥାନ୍ତେ, ତେବେ ଜାଣି ପାରନ୍ତେ ଯେ ସମ୍ରାଟ ଅଶୋକଙ୍କ ସାମ୍ରାଜ୍ୟ ଇରାନ ଓ ଚୀନର ସିକ୍ୟାଙ୍ଗ ପ୍ରଦେଶକୁ ନେଇ ବିଶାଳ ଭାରତ ରାଜ୍ୟ ଗଠନ ହୋଇଥିଲା । ବିଦେଶୀ ପର୍ଯ୍ୟଟକ ମେଘାସ୍ଥିନିଜ, ସେହି ସମୟର ଭାରତୀୟ ସଂସ୍କୃତି ବିଷୟରେ ଲେଖିଛନ୍ତି -

"ସମାଜରେ ସାଧୁତା ଓ ଇମାନଦାରୀ ଯୋଗୁଁ ଜନସାଧାରଣଙ୍କ ଭିତରେ ସ୍ନେହ ସୌହାର୍ଦ୍ଦ୍ୟ ଭରି ରହିଛି । ହିଂସା ବହୁତ କମ ଦେଖିବାକୁ ମିଳୁଛି ।"

ଧର୍ମଗୁରୁମାନେ ଜାଣି ରଖିବା ଉଚିତ ଯେ ସେହି ସମୟରେ ବୌଦ୍ଧ ମତବାଦର ବହୁଳ ପ୍ରଭାବ ଥିଲା । ବୌଦ୍ଧ ମତବାଦ ତଥାକଥିତ ସ୍ୱର୍ଗ, ନର୍କ, ଆତ୍ମା, ପରମାତ୍ମା ଓ ପୁନର୍ଜନ୍ମ ଆଦିକୁ ଅସ୍ୱୀକାର କରୁଥିଲା । ଦୁଃଖରୁ ମୁକ୍ତି ହିଁ ଥିଲା ସେମାନଙ୍କ ପାଇଁ ନିର୍ବାଣ ପ୍ରାପ୍ତି । ସମ୍ରାଟ ଅଶୋକ ନିଜେ ବୌଦ୍ଧ ମତବାଦୀ ଥିଲେ ଏବଂ ବୌଦ୍ଧ ମତବାଦ ହିଁ ରାଜଧର୍ମ ଥିଲା ।

ଅଶୋକଙ୍କ ବଂଶଜ ରାଜା ବୃହଦ୍ରଥଙ୍କୁ, ବିଶ୍ୱାସଘାତକତା ପୂର୍ବକ ହତ୍ୟା କରି 'ମିତ୍ରା' ନାମକ ଏକ ବ୍ରାହ୍ମଣ ମନ୍ତ୍ରୀ ବ୍ରାହ୍ମଣବାଦକୁ ପୁନଃ ଉଦ୍ଧାର କରିଥିଲା । ଆମ ଦେଶରେ ବିଶ୍ୱାସଘାତ କରି ଯେଉଁଠାରେ ବ୍ରାହ୍ମଣବାଦର ମୂଳଦୁଆ ପଡିଛି, ସେହି ଦେଶରେ ଭ୍ରଷ୍ଟାଚାର ବୃଦ୍ଧି ହେବ ନାହିଁ ତ ଆଉ କ'ଣ ହେବ ? ସମ୍ରାଟ ହର୍ଷବର୍ଦ୍ଧନଙ୍କ ସମୟ ପର୍ଯ୍ୟନ୍ତ ଆସୁ ଆସୁ ବୌଦ୍ଧ ମତବାଦ, ଭାରତରୁ ଲୋପ ପାଉବାକୁ ଲାଗିଲା । ତା'ପରେ ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ (ଅଷ୍ଟମ ଶତାବ୍ଦୀ) ଫଳରେ ଦେଶରୁ ବୌଦ୍ଧ ମତବାଦ ସମ୍ପୂର୍ଣ୍ଣ ଭାବେ ସମାପ୍ତ ହୋଇଗଲା । ଶଙ୍କରାଚାର୍ଯ୍ୟ, ବ୍ରାହ୍ମଣବାଦର ସବୁଠାରୁ ପ୍ରଭାବଶାଳୀ ଉଦ୍ଧାରକ ଭାବେ ପ୍ରମାଣିତ ହୋଇଛନ୍ତି । ଆଜି ପର୍ଯ୍ୟନ୍ତ ଟିକି ରହିଥିବା ବ୍ରାହ୍ମଣବାଦ, ସେହି ଧର୍ମଗୁରୁଙ୍କ ଅବଦାନ ବୋଲି କୁହାଯାଉଛି ।

ବୌଦ୍ଧମତକୁ ଲୋପ କରିବାପାଇଁ, ଶଙ୍କରାଚାର୍ଯ୍ୟ ଭାରତର ଚାରି ଦିଗରେ ଚାରିଗୋଟି ଧର୍ମପୀଠ ସ୍ଥାପନ କରି, ଚାରିଜଣ ଶଙ୍କରାଚାର୍ଯ୍ୟଙ୍କୁ ପରିଚାଳନା ଦାୟିତ୍ୱ ଦେଇଥିଲେ । ସେହିମାନେ ଯାହା ନିର୍ଦ୍ଦେଶ ଦେବେ, ତାହା ହିଁ ଅକାଟ୍ୟ ସତ୍ୟ ରୂପେ, ପାଳନ କରିବାକୁ କଡା ବ୍ୟବସ୍ଥା ଥିଲା । ଚୀନ ପରିବ୍ରାଜକ 'ଫାହ୍ୱାନ'ଙ୍କ ଐତିହାସିକ ବର୍ଣ୍ଣନା ଅନୁସାରେ, ସେହି ସମୟରେ ବୌଦ୍ଧମତବାଦ ବି ବ୍ରାହ୍ମଣବାଦର ଧାରା ସହିତ ପ୍ରବାହିତ ହେଉଥିଲା । ଯେତେବେଳେ ବୌଦ୍ଧମତବାଦୀଙ୍କୁ, ଅମାନୁଷିକ ଭାବେ ବହୁ ସଂଖ୍ୟାରେ ହତ୍ୟା କରିଦିଆଗଲା ଏବଂ ବୌଦ୍ଧମତବାଦ ଦେଶରୁ ଲୋପ ହୋଇଗଲା, ସେତିକିବେଳୁ ସମାଜରେ ଅନୈତିକତା ବୃଦ୍ଧି ପାଇଲା ଏବଂ ଭ୍ରଷ୍ଟାଚାର ବି ବଢିବାକୁ ଲାଗିଲା । ଯାହା କି ଆଜି ପର୍ଯ୍ୟନ୍ତ ଭ୍ରଷ୍ଟାଚାର, ଦୁରାଚାର, ଅନାଚାର ଓ ଅନୈତିକ ଧନ୍ଦା ଆଦି ଚରମ ସୀମାରେ ପହଞ୍ଚି ଯାଇଛି ।

ଭ୍ରଷ୍ଟାଚାରର କାରଣ ଉପରେ ବିଚାର କଲେ, ଆମେ ବୁଝି ପାରିବା ଯେ ଆଧ୍ୟାତ୍ମବାଦ ଏବଂ ଭ୍ରଷ୍ଟାଚାର ପରସ୍ପର ପରିପୂରକ ଅଟେ । ପୁନର୍ଜନ୍ମ ଉପରେ ଆଧାରିତ ଧର୍ମରେ, ପ୍ରଥମ

ଭ୍ରଷ୍ଟାଚାର ହେଉଛି - "ଆମେ ମନୁଷ୍ୟକୃତ ବ୍ୟବସ୍ଥା କାରଣରୁ ଉପଜିଥିବା ଦୁଃଖ ଓ ସୁଖ, ଗରିବ ଓ ଧନୀ, ଉଚ୍ଚ ଓ ନୀଚ ଆଦି ଅବସ୍ଥାକୁ ନ ମାନି, ପୂର୍ବଜନ୍ମକୃତ କର୍ମଫଳର ପରିଣାମ ବୋଲି ମାନୁଛନ୍ତି ।" ଧର୍ମଗୁରୁମାନେ ଯେଉଁ ପୁନର୍ଜନ୍ମ ଅସତ୍ୟ ହେଲେ ବି ସତ୍ୟ ବୋଲି ଦାବି କରୁଛନ୍ତି, ତାହାଦ୍ୱାରା ସାଧାରଣ ଧର୍ମବିଶ୍ୱାସୀ ଜନତା ଭ୍ରମିତ ହୋଇଯାଉଛନ୍ତି । ସେମାନେ ଭ୍ରଷ୍ଟାଚାର ବିରୁଦ୍ଧରେ, ନିଜେ କିଛି ନ କରି, ତଥାକଥିତ ଭଗବାନଙ୍କ ଭରସାରେ ଛାଡି ଦେଉଛନ୍ତି । ନିଜ ମନକୁ ବୁଝାଇବା ପାଇଁ ତର୍କ ଦେଇଥାନ୍ତି - "ଭ୍ରଷ୍ଟାଚାରୀ ବ୍ୟକ୍ତିମାନେ ପୂର୍ବ ଜନ୍ମରେ ସୁକର୍ମ କରିଥିବାରୁ ଏହି ଜନ୍ମରେ ସେମାନେ ବହୁତ ସମ୍ପତ୍ତି ପ୍ରାପ୍ତ କରି, ସୁଖ ଭୋଗ କରି ପାରୁଛନ୍ତି । ଏହି ଜନ୍ମରେ ଯଦି ସେମାନେ କୁକର୍ମ କରିବେ, ଆସନ୍ତା ଜନ୍ମରେ ଭଗବାନ ତାଙ୍କୁ ନିଶ୍ଚୟ ଦଣ୍ଡ ଦେବେ ।

ଆମ ସମାଜର ଭ୍ରଷ୍ଟାଚାରୀ ଲୋକମାନଙ୍କ ପ୍ରତି, ସାଧାରଣ ଜନତାଙ୍କ ଉପରୋକ୍ତ ଭ୍ରାନ୍ତ ବିଚାର, ସେମାନଙ୍କର ଅସହାୟବୋଧକୁ ଦର୍ଶାଉଛି । ସମାଜର ବଳଶାଳୀ ଲୋକମାନଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରି ନପାରି, ଏକ କାଳ୍ପନିକ ଦଣ୍ଡ ବ୍ୟବସ୍ଥାକୁ ସତ ଭାବି ମନକୁ ସାନ୍ତ୍ୱନା ଦେଉଛନ୍ତି ।

ପିଲାଦିନେ ଗୋଟିଏ ପ୍ରବାଦର ପ୍ରକୃତ ଅର୍ଥ ମୁଁ ବୁଝି ପାରୁନଥିଲି । "ଉଡ଼ନ୍ତା ଲିଆ, ଗୋବିନ୍ଦାୟ ସ୍ୱାହା ।" ଦିନେ ମୋର ଜଣେ ସଂସ୍କୃତ ଶିକ୍ଷକଙ୍କୁ ଏହାର ଅର୍ଥ ପଚାରିଲି । ସେ ଟିକିଏ ହସି ଦେଇ ମୋତେ ଗୋଟିଏ କାହାଣୀ ଶୁଣାଇଲେ - "ଜଣେ ବ୍ରାହ୍ମଣ ଏକ ଯଜମାନଠାରୁ ଦକ୍ଷିଣା ସ୍ୱରୂପ ପାଇଥିବା କିଛି 'ଲିଆଭୁଜା' ଟୋକେଇରେ ନେଇ, ମୁଣ୍ଡ ଉପରେ ଥୋଇ ଘରକୁ ଫେରୁଥିଲେ । ବାଟରେ ହଠାତ ଘୂର୍ଣ୍ଣିବାତ୍ୟା ଯୋଗୁଁ ସବୁତକ 'ଲିଆଭୁଜା' ଟୋକେଇରୁ ବାହାରି, ବିଛାଡ଼ି ହୋଇ ତଳେ ପଡିଗଲା । ବ୍ରାହ୍ମଣ ଦେଖିଲେ ଭୁଜା ଗୁଡିକ ସଂଗ୍ରହ କରିବା ସମ୍ଭବ ନୁହେଁ, ତେଣୁ ସେ ତାଙ୍କର ବ୍ରାହ୍ମଣ ବୁଦ୍ଧିରେ କହିଦେଲେ - "ଗୋବିନ୍ଦାୟ ସ୍ୱାହା' । ଅର୍ଥାତ ଗୋବିନ୍ଦଙ୍କୁ ଭୁଜାତକ ଅର୍ପଣ କରି ପୂଣ୍ୟ ଅର୍ଜନ କରିନେଲେ ।

ପୁନର୍ଜନ୍ମ ଓ ଭାଗ୍ୟ ଫଳର ଅଫିମ ଖାଇ, ନିଶାଗ୍ରସ୍ତ ରହୁଥିବା ମଣିଷମାନେ, କେମିତି ବୁଝିବେ ଯେ ଭ୍ରଷ୍ଟାଚାର କରୁଥିବା ଲୋକମାନଙ୍କୁ, ପ୍ରତ୍ୟକ୍ଷ ଭାବେ ବିରୋଧ କରି ବାଧା ନଦେଲେ, ତାହା ବେଳକୁ ବେଳ ଆହୁରି ବଢ଼ିଯିବ ।

କେତେକ କୁହନ୍ତି - ସେମାନଙ୍କୁ ଆହୁରି ବେଶୀ ପାପ କରିବାକୁ ସୁଯୋଗ ଦିଅ, ପାପର ପରିମାଣ ବଢିଗଲେ, ଭଗବାନ ନିଶ୍ଚୟ ସେମାନଙ୍କୁ ଉପଯୁକ୍ତ ଦଣ୍ଡ ଦେବେ ।

ଏହିଭଳି ଅହେତୁକ ବିଶ୍ୱାସକୁ ନେଇ ତଥାକଥିତ ଅବତାର ପୁରୁଷଙ୍କୁ ପ୍ରତୀକ୍ଷା କଲେ, ସମସ୍ତ ମାନବ ସମାଜ ନଷ୍ଟ ହୋଇଯିବ ସିନା, ସ୍ୱର୍ଗରୁ କେହି ସୁଧାରିବାକୁ ଆସିବନାହିଁ ।

ଆମେ ନିର୍ବିବାଦରେ କହି ପାରିବୁ ଯେ ଆଧ୍ୟାତ୍ମବାଦ ହିଁ ତଥାକଥିତ ପୁନର୍ଜନ୍ମ, ଭାଗ୍ୟ ଓ ଭଗବାନଙ୍କ ନାମ ନେଇ, ଜନସାଧାରଣଙ୍କ ନୈତିକ ଶକ୍ତିକୁ ଦୁର୍ବଳ ଓ ଅସହାୟ କରିଦେଉଛି । ଲୋକମାନେ ପ୍ରତିବାଦ କିମ୍ବା ବିରୋଧ କରିବା ବଦଳରେ, ଭଗବାନଙ୍କ ଲୀଳା ଭାବି ଚୁପ ରହୁଛନ୍ତି । ଧର୍ମଗୁରୁମାନଙ୍କର ଉପଦେଶ "ଚୋରି କରନାହିଁ, ଲାଞ୍ଚ ନିଅ ନାହିଁ" ଆଦି ନୈତିକ ପ୍ରବଚନ ପୁନର୍ଜନ୍ମ କର୍ମଫଳ ଭଳି ବିଶ୍ୱାସ ଉପରେ କୌଣସି ପ୍ରଭାବ ପକାଉନହିଁ । ଯେଉଁ ସମାଜରେ ଅନ୍ୟାୟ ଓ ଭ୍ରଷ୍ଟାଚାର ବିରୁଦ୍ଧରେ ଲଢ଼ିବା ପାଇଁ, ଯେତେ ବେଶୀ ଜନସଚେତନତା ରହିବ, ସେତେ କମ ପରିମାଣରେ ଭ୍ରଷ୍ଟାଚାର ହେବ । କିନ୍ତୁ ଆଧ୍ୟାତ୍ମବାଦ, ପୁନର୍ଜନ୍ମ ଓ ଭାଗ୍ୟଫଳର ଗୋଲକ ଧନ୍ଦା ଜନସଚେତନତାକୁ ନିଷ୍କ୍ରିୟ ତଥା ଦୁର୍ବଳ କରିଦେଉଛି ।

ପ୍ରାଚୀନ କାଳରୁ ହିଁ ପରମ୍ପରା ରହି ଆସିଛି - ଶାରୀରିକ ପରିଶ୍ରମ ଯଥା : ଚାଷ କରିବା, ବଢ଼େଇ କାମ କରିବା, ଲୁଗା ଧୋଇବା,ବାଳ କାଟିବା ଓ ମଇଳା ସଫା କରୁଥିବା ଲୋକମାନେ ନିମ୍ନ ଶ୍ରେଣୀର ଏବଂ ଆଧ୍ୟାତ୍ମିକ ଶାସ୍ତ୍ର ପଢ଼ୁଥିବା, ଧାର୍ମିକ ପ୍ରବଚନ ଶୁଣାଉଥିବା ଲୋକମାନେ, ଉଚ୍ଚ ଶ୍ରେଣୀର ଅନ୍ତର୍ଗତ । ଅର୍ଥାତ ଦୁନିଆରେ ମଣିଷକୁ ବଞ୍ଚି ରହିବାପାଇଁ ଯେଉଁ ମୌଳିକ ବସ୍ତୁ ଆବଶ୍ୟକ, ସେ ଗୁଡିକ ଯେଉଁମାନେ ଉତ୍ପାଦନ କରୁଛନ୍ତି, ସେମାନେ କ'ଣ ପାପୀ ? ସେମାନେ ପୂର୍ବଜନ୍ମରେ ପାପ କରିଥିଲେ, ତେଣୁ ଏହି ଜନ୍ମରେ ଦୁଃଖ ଭୋଗ କରିବେ, ଆଉ ଯେଉଁମାନେ କାମଚୋର, ପଳାୟନବାଦୀ ଏବଂ କାଳ୍ପନିକ ମୋକ୍ଷପ୍ରାପ୍ତିର ଲୋଭ ଦେଖାଇ, ଜନତାଙ୍କ କଷ୍ଟ ଉପାର୍ଜିତ ଧନକୁ ଶୋଷଣ କରି, ସୁଖ ଭୋଗ କରୁଛନ୍ତି, ସେହିମାନେ ଉଚ୍ଚ ଶ୍ରେଣୀର ସମ୍ମାନ ପାଇବା କ'ଣ ଯୋଗ୍ୟ ?

ଯେଉଁମାନେ କମ କିମ୍ବା ବିନା ମୂଳଧନ ବିନିଯୋଗ କରି, ବହୁତ କମ ସମୟରେ, ଅଧିକରୁ ଅଧିକ ଧନ ଅର୍ଜନ କରିବାକୁ ଚାହୁଁଛନ୍ତି, ସେମାନେ ବିଭିନ୍ନ ଅନୈତିକ ଧନ୍ଦା କରୁଛନ୍ତି । ସେହିଭଳି ସମାଜ ବିରୋଧୀ, ଦେଶ ବିରୋଧୀ କାର୍ଯ୍ୟ ଯଥା : ସୁନା, ରୂପା, ଅଫିମ, ଚରସ, ଗଞ୍ଜେଇ, ଆଦି ଚୋରା ବାଟରେ ଅନ୍ୟ ଦେଶକୁ ଚାଲାଣ କରିବା, ଯୁବତୀ ଓ ଗରିବ

ଶିଶୁମାନଙ୍କୁ ପ୍ରଲୋଭନ ଦେଖାଇ ଚାଲାଣ କରି, ଧନ ରୋଜଗାର କରୁଥିବା ବ୍ୟକ୍ତିଙ୍କୁ, ଭ୍ରଷ୍ଟାଚାର ଶ୍ରେଣୀରେ ରଖି ସାମୂହିକ ଭାବେ ନିନ୍ଦା କରିବା ଉଚିତ । କାରଣ ସେମାନେ ଦେଶ ଓ ସମାଜର ନୀତି ନିୟମ ଭଙ୍ଗ କରୁଛନ୍ତି । ଅପର ପକ୍ଷରେ ଧର୍ମଗୁରୁମାନେ, ସେହିଭଳି ନିନ୍ଦନୀୟ କର୍ମକୁ, ଗୁରୁତ୍ୱ ନଦେଇ ଭ୍ରଷ୍ଟାଚାରୀମାନଙ୍କର ଅର୍ଜିତ ଧନର ପରିମାଣକୁ ଗୁରୁତ୍ୱ ଦେଇଥାନ୍ତି । ଧନୀବ୍ୟକ୍ତି ପୂର୍ବଜନ୍ମରେ ପୁଣ୍ୟ ଅର୍ଜନ କରି ଥିବାରୁ, ଏହି ଜନ୍ମରେ ଧନ ଅର୍ଜନ କରିପାରିଛି କହି ଭ୍ରଷ୍ଟାଚାରକୁ ସମର୍ଥନ କରିଥାନ୍ତି । ବ୍ୟକ୍ତିର ଏହି ଜନ୍ମର ରାଷ୍ଟ୍ରଦ୍ରୋହ ଦୋଷ, ତା'ର ପୂର୍ବଜନ୍ମର ଫଳସ୍ୱରୂପ ତା'ର ପ୍ରାରବ୍ଧ ଯୋଗୁଁ ଦୋଷ ଲୁଚିଯାଏ । ସେ କେଉଁ କର୍ମ କରି ଧନ ଅର୍ଜନ କରିଛି, ସେ ବିଷୟରେ ଚିନ୍ତା କରିବାକୁ ମଧ୍ୟ ଚାହାନ୍ତି ନାହିଁ ।

ହିନ୍ଦୀରେ ଗୋଟିଏ ପ୍ରବାଦ ଅଛି - "ଭଗବାନ ଜବ ଦେତା ହେ ତୋ, ଛପର ଫାଡକେ ଦେତା ହେ ।" ଅର୍ଥାତ ଭଗବାନ ଯେବେ କାହାକୁ ଧନ ଦେବାକୁ ଚାହିଁବ ତ ସେ ଯେଉଁ କାମ କରୁ କିଛି ଯାଏ ଆସେ ନାହିଁ । ସବୁ କିଛି ନିର୍ଭର କରୁଛି ତଥାକଥିତ ଭାଗ୍ୟ ଉପରେ । ଯିଏ ଯେତେ ପରିଶ୍ରମ କରୁ କିନ୍ତୁ ଯଦି ଭାଗ୍ୟରେ ଲେଖା ନଥିବ ତ କିଛି ମିଳିବନାହିଁ ।" ଧାର୍ମିକମାନଙ୍କ ଚିନ୍ତନ ପୁନର୍ଜନ୍ମ ଓ ଭାଗ୍ୟବାଦ ଦ୍ୱାରା ଏଭଳି ପ୍ରଭାବିତ ହୋଇଥାଏ ଯେ ରାଷ୍ଟ୍ର ଦ୍ରୋହ କରି ଉପାର୍ଜନ କରୁଥିବା ଧନକୁ ବି ସେମାନେ ସୌଭାଗ୍ୟର ଫଳ ବୋଲି କହୁଛନ୍ତି । ସେହିଭଳି ଲାଞ୍ଚ ନେଇ କାମ କରିବା ବି ଏକ ରାଷ୍ଟ୍ରଦ୍ରୋହୀ କାମ । ନିଜର ସଚ୍ଚୋଟ ପଣକୁ ଧୋକା ଦେଇ, ଲାଞ୍ଚ ନେଇ କାମ କରିବା ବି ତାଙ୍କର ପୂର୍ବଜନ୍ମର ଫଳ ବୋଲି ଭାବୁଛନ୍ତି । ଯଦି କେବେ ନିଜର ବିବେକ ଅପରାଧବୋଧ ଅନୁଭବ କରୁଛି, ତେବେ କୌଣସି ଧର୍ମସ୍ଥଳକୁ ଯାଇ, ପୂଜା ପାଠ କରି, କିଛି ଦାନ ଦକ୍ଷିଣା ଦେଇ, ପ୍ରାୟଶ୍ଚିତ କରିବାର ଉପାୟ ଧର୍ମଗୁରୁମାନେ ବତେଇଦିଅନ୍ତି । ଏଭଠି ମଧ୍ୟ ଦୁର୍ଭାଗ୍ୟ ଓ ସୌଭାଗ୍ୟର ଗୋଲକ ଧନ୍ଦାକୁ ସମସ୍ତେ ମାନୁଛନ୍ତି । ପ୍ରଶାସନ ଦ୍ୱାରା ଭ୍ରଷ୍ଟାଚାର ଧରା ନ ପଡିଲେ, ଧନୀ ବ୍ୟକ୍ତିର ସୌଭାଗ୍ୟ ଏବଂ ଧରା ପଡିଗଲେ ତା'ର ଦୁର୍ଭାଗ୍ୟ ବୋଲି କହନ୍ତି । ଭ୍ରଷ୍ଟାଚାରକୁ ବନ୍ଦ କରିବାପାଇଁ ନିଜେ କୌଣସି ପଦକ୍ଷେପ ନ ନେଇ, ପୁଣି ସେହି କାଳ୍ପନିକ ଭଗବାନଙ୍କୁ ହିଁ ପ୍ରାର୍ଥନା କରିଥାନ୍ତି - "ହେ ଭଗବାନ ଏହି ଦୋଷୀ ବ୍ୟକ୍ତିକୁ ଶୀଘ୍ର ଦଣ୍ଡ ଦିଅ"

ଯଦି ତଥାକଥିତ ଭାଗ୍ୟ ଓ ଭଗବାନଙ୍କ ମିଥ୍ୟା ଆଶ୍ୱସନାକୁ ତ୍ୟାଗ କରି ପ୍ରତ୍ୟେକ ସଚେତନ ବ୍ୟକ୍ତି ରାଷ୍ଟ୍ରଦ୍ରୋହୀ, କୁକର୍ମୀ, କର୍ତ୍ତବ୍ୟହୀନ, ଭ୍ରଷ୍ଟାଚାରୀ ବ୍ୟକ୍ତିମାନଙ୍କୁ ପ୍ରଶାସନ

ସାହାଯ୍ୟରେ ଦଣ୍ଡିତ କରିପାରନ୍ତା, ତେବେ କୌଣସି ବ୍ୟକ୍ତି ଅନୈତିକ କାମ କରିବାକୁ ସାହାସ କରନ୍ତା ନାହିଁ । କଲେ ବି ବେଶୀ ଦିନ ଚଳନ୍ତା ନାହିଁ । ଆଜି ଆମେ ଦେଖୁଛୁ, ନିଜେ ଠକି ହୋଇଥିବା ବ୍ୟକ୍ତି ବି ଭ୍ରଷ୍ଟାଚାରୀର ପୋଲ ଖୋଲିବାକୁ ଚାହୁଁନାହିଁ । ଭ୍ରଷ୍ଟାଚାରୀକୁ ଭଗବାନଙ୍କ ଅଦାଲତରେ, ବିଚାର ହେବ ଭାବି ଚୁପ ରହିଯାଏ । ସତରେ ଯଦି ଭଗବାନଙ୍କ ଅଦାଲତରେ ସମସ୍ତ ଦୋଷୀଙ୍କର ବିଚାର ହେବା କଥା, ତେବେ ଦୁନିଆରେ ମଣିଷମାନେ, ଏତେ ସଂଖ୍ୟାରେ କୋର୍ଟ, କଚେରୀ, ତିଆରି କରିବା ଆବଶ୍ୟକ କ'ଣ ଥିଲା ?

ମାନସିକ ଓ ଶାରୀରିକ ପରିଶ୍ରମ କରୁଥିବା ଦୁଇ ଗୋଷ୍ଠୀ ମଣିଷଙ୍କ ଭିତରେ, କେତେ ପ୍ରଭେଦ ରହୁଛି ଚିନ୍ତା କରନ୍ତୁ । ମାନସିକ ପରିଶ୍ରମ କରୁଥିବା ଡାକ୍ତର, ଓକିଲ, ଇଂଜିନିୟର, ଆଇ.ଏ.ଏସ. ଅଫିସର ଆଦି ଲୋକମାନେ ନିଜର ପ୍ରତିଭା ବଳରେ ଯେତେ ପାଉଛନ୍ତି ଧନ ଅର୍ଜନ କରିପାରୁଛନ୍ତି । ଯେଉଁ ପ୍ରତିଭା ସମାଜର ସେବାପାଇଁ ଉଦ୍ଦିଷ୍ଟ, ତାହା ସେହି ଅନୁପାତରେ, ସମାଜ ପାଇଁ ବ୍ୟୟ ହେବା ଉଚିତ । ପରିତାପର ବିଷୟ - ସେମାନଙ୍କର ବ୍ୟୟ ତୁଳନାରେ ଆୟର ପରିମାଣ ବେଶୀ ଦେଖିବାକୁ ମିଳୁଛି ।

ଭୂମିରେ ଶାରୀରିକ ପରିଶ୍ରମ କରି, ନିଜର ପ୍ରତିଭା ବଳରେ, ଚାଷ କରୁଥିବା କୃଷକମାନେ ମଧ୍ୟ ଇମାନଦାରୀରେ ଖାଦ୍ୟ ଶସ୍ୟ ଉତ୍ପାଦନ କରି, ସମାଜର ପେଟକୁ ଖାଦ୍ୟାନ୍ନ ଯୋଗାଉଛନ୍ତି । ସେମାନଙ୍କର ଆୟ କିନ୍ତୁ ବହୁତ କମ ।

କେତେକ ଯୁକ୍ତି କରିପାରନ୍ତି ଯେ ଜଣେ କୃଷକ, ଚାହିଁଲେ ମଧ୍ୟ ଡାକ୍ତର କିମ୍ବା ଆଇ.ଏ.ଏସ ଅଫିସର କାମ କରିପାରିବ ନାହିଁ ।

ଏଇଠି ପ୍ରଶ୍ନ ଉଠୁଛି - ଜଣେ ଡାକ୍ତର କିମ୍ବା ଆଇ.ଏ.ଏସ.ପାଇଥିବା ବ୍ୟକ୍ତି କ'ଣ ସହଜରେ କୃଷକର କାମ କରିପାରିବେ ? ବରଂ କାମର ଗୁରୁତ୍ୱ ଦୃଷ୍ଟିରୁ, କୃଷକର କାମ ଖାଦ୍ୟ ଉତ୍ପାଦନ କରୁଥିବା ଯୋଗୁଁ ବେଶୀ ମହତ୍ତ୍ୱ ପୂର୍ଣ୍ଣ । ଖାଦ୍ୟ ନ ଖାଇ କୌଣସି ବ୍ୟକ୍ତି ଉଚ୍ଚ ପାହ୍ୟାରେ ପହଞ୍ଚି ପାରିବ ନାହିଁ । ମଣିଷର ମୌଳିକ ଆବଶ୍ୟକ ଖାଦ୍ୟ ଉତ୍ପାଦନ କରୁଥିବା କୃଷକ ଏବଂ ଜଣେ ସେବା ଯୋଗାଉଥିବା ମଣିଷ ଭିତରେ ଆର୍ଥିକ ପ୍ରଭେଦ ଏତେ ବେଶୀ ରହୁଛି କାହିଁକି ? ଏହି ପ୍ରଭେଦ ଭଗବାନଙ୍କ ଦ୍ୱାରା ନୁହେଁ ବରଂ ମଣିଷମାନଙ୍କ ଦ୍ୱାରା ହିଁ ସୃଷ୍ଟି ହୋଇଛି । ସେମାନଙ୍କ ମତରେ ମାନସିକ ପରିଶ୍ରମ କରୁଥିବା ବ୍ୟକ୍ତି, ଶାରୀରିକ ପରିଶ୍ରମ କରୁଥିବା ବ୍ୟକ୍ତି ଠାରୁ ଶ୍ରେଷ୍ଠ ।

**********

# ବିବାହିତ ବିଦେଶୀ ଦମ୍ପତିଙ୍କ ହିନ୍ଦୁ ବିବାହ : ତାମସା

ଗତ କିଛି ବର୍ଷ ହେବ ବିବାହିତ, ବିଦେଶାଗତ ଦମ୍ପତିମାନଙ୍କର, ହିନ୍ଦୁ ରୀତି ନୀତିରେ ବିବାହ କରିବା ପର୍ବ ଖୁବ ଚାଲିଛି । ପ୍ରଥମରୁ ଅନ୍ୟ ଧର୍ମରେ ହେଉ, ଅବା କୋର୍ଟରେ ବିବାହ କରିଥିବା ଦମ୍ପତିମାନେ ପୁଣି ଥରେ ଭାରତୀୟ ପରମ୍ପରା ଅନୁସାରେ, ବୈଦିକରୀତିରେ ବିବାହ କରିବା ପାଇଁ ଭାରତକୁ ଆସୁଛନ୍ତି । ସେମାନେ କାଶୀ ସହର ସ୍ଥିତ, ଗଙ୍ଗା ନଦୀ କୂଳରେ ଥିବା ହୋଟେଲମାନଙ୍କରେ ରହନ୍ତି । ସେଠିକାର ସ୍ଥାନୀୟ ପୁରୋହିତମାନଙ୍କ ସହ ପରାମର୍ଶ କରନ୍ତି । ଧନଲୋଭୀ କିଛି ପୁରୋହିତ, ସେହି ବିବାହିତ ଦମ୍ପତିଙ୍କୁ ପୁଣିଥରେ ହିନ୍ଦୁ ରୀତିରେ ବିବାହ କରାଇବା ପାଇଁ ରାଜି ହୋଇଯାଆନ୍ତି । ଏହିପରି ବିବାହ ଉତ୍ସବ ପାଇଁ, ଶୁଭମୁହୂର୍ତ୍ତ ସ୍ଥିରୀକୃତ ହୋଇନଥାଏ, ତେଣୁ ବିବାହ ବେଦୀରେ ଅଗ୍ନିକୁଣ୍ଡ ସମକ୍ଷରେ ବସିଥିବା ଦମ୍ପତି, ଏହା ପୂର୍ବରୁ ଶାରୀରିକ ସମ୍ବନ୍ଧ ସ୍ଥାପନ କରିଛନ୍ତି କି ନାହିଁ, କିମ୍ବା ସ୍ତ୍ରୀ ଗର୍ଭବତୀ ଅଛି କି ନାହିଁ, ସେ ବିଷୟ ପ୍ରତି କେହି ଧ୍ୟାନ ଦିଅନ୍ତି ନାହିଁ କିମ୍ବା ସେ ସବୁକୁ କେହି ମହତ୍ତ୍ୱ ଦିଅନ୍ତି ନାହିଁ । ଏହାର କାରଣ ସ୍ପଷ୍ଟ ଯେ ସେମାନେ ପୁରୋହିତଙ୍କୁ ମୋଟା ଦକ୍ଷିଣା ଦେବାପାଇଁ ରାଜି ହୋଇଥାନ୍ତି । ସେଇଥିପାଇଁ ସବୁ କିଛି ଶାସ୍ତ୍ର ସମ୍ମତ ଓ ନୀତି ସଙ୍ଗତ ହୋଇଯାଏ ।

ଖାଲି ସେତିକି ନୁହେଁ, ଅପ୍ରବାସୀ ଦମ୍ପତି ସେହି ସହରବାସୀ ହୋଇଥିଲେ, ତାଙ୍କର ପୂର୍ବ ପରିଚିତ ବର ପକ୍ଷ ଓ କନ୍ୟା ପକ୍ଷ ହୋଇ, ବିବାହ ପର୍ବରେ ଯୋଗ ଦେବାକୁ ଅନେକ ଲୋକ ମିଳିଯା'ନ୍ତି । ସେହିମାନଙ୍କ ମଧ୍ୟରୁ କନ୍ୟାଦାନ, ବରଯାତ୍ରୀ, ଶୋଭାଯାତ୍ରା, ବାଣ, ବାଜା, ଶାମିୟାନା, ଆଦିର ବନ୍ଦୋବସ୍ତ କରିବା ଲୋକ ମଧ୍ୟ ଯୋଗାଡ଼ ହୋଇ ଯାଆନ୍ତି । ଶେଷରେ ଯେଉଁ ମହଙ୍ଗା ଭୋଜନ ସହିତ ପାନୀୟ (ମଦ୍ୟ) ବ୍ୟବସ୍ଥା ହୋଇଥାଏ, ତାହାକୁ କିଏ ବା ହାତଛଡ଼ା କରିପାରିବ ? କଥାରେ ଅଛି - "ଭାତ ଫିଙ୍ଗିଲେ କାଉ ଅପୂର୍ବ କି ?" ଭାରତୀୟ ବିବାହିତା ସ୍ତ୍ରୀମାନେ, ବିଦେଶୀ ସ୍ତ୍ରୀମାନଙ୍କୁ ଭାରତୀୟ କନ୍ୟାବେଶରେ ଶାଢ଼ୀପିନ୍ଧେଇ ହାତରେ ମେହେନ୍ଦି ଲଗେଇଦିଅନ୍ତି । ରାତିସାରା ସଙ୍ଗୀତ, ନାଚ, ଖାଇବା ପିଇବାରଆସର ଜମିରହେ । ବିଦେଶୀ ଦମ୍ପତି, ହୁଏତ ଦେଖି ଖୁସି ହେଉଥିବ ଯେ ଟଙ୍କା ଖର୍ଚ୍ଚ କଲେ, କିଭଳି ଏଠିକା ଜନତା ଓ ପୁରୋହିତ, କିପରି ନିଜର ଧାର୍ମିକ ପରମ୍ପରାର ଉପହାସ କରିପାରନ୍ତି ?

ଗତ କିଛି ବର୍ଷ ତଳେ ରାଜସ୍ଥାନର ଜଣେ ଅପ୍ରବାସୀ ଛାଡପତ୍ର ନେଇଥିବା ଉଦ୍ୟୋଗପତି 'ଅରୁଣ ନାୟର' ଏବଂ ଛାଡପତ୍ର ନେଇଥିବା, ଗୋଟିଏ ସନ୍ତାନର ଜନନୀ 'ଇଜ ହାର୍ଲେ' ହିନ୍ଦୁ ରୀତିରେ ବିବାହ କରିଥିଲେ । ଆଶ୍ଚର୍ଯ୍ୟ ଲାଗୁଛି ଯେ ଏହି ଦୁହିଁଙ୍କ ବିଷୟରେ, ସବୁକିଛି ଜାଣି ସୁଦ୍ଧା ପୁରୋହିତମାନେ ଏମାନଙ୍କ ବିବାହ, ବୈଦିକ ରୀତିରେ କିପରି ଖୁବ ଧୁମଧାମରେ କରାଇଦେଲେ ? ମଜାକଥା ହେଉଛି ଯେ କିଛି ଦିନ ପରେ, ସେ ଦୁହିଁଙ୍କ ପୁଣି ଛାଡପତ୍ର ହୋଇଗଲା । ଅର୍ଥାତ ହିନ୍ଦୁ ବିବାହ ମଧ ସେ ଦୁହିଁଙ୍କୁ ବାନ୍ଧି ରଖି ପାରିଲା ନାହିଁ ।

ଆମେ ଏଇଠି ପ୍ରଶ୍ନ କରିବାକୁ ଚାହୁଁ ନାହୁଁ ଯେ ସେମାନଙ୍କର ପୁନର୍ବିବାହ କାହିଁକି କରାଯାଉଛି ? ଆମର ଆପତ୍ତି ହେଉଛି - ହିନ୍ଦୁ ବିବାହ ପ୍ରଥାରେ ଯଦି ବହୁତ ଜଟିଳ ପ୍ରକ୍ରିୟା ରହିଛି, ତେବେ ବିଦେଶୀ ଏବଂ ଅନ୍ୟ ଧର୍ମର କନ୍ୟା, ସେ ପୁଣି ପୂର୍ବ ବିବାହିତା ସହିତ, ଏତେ ସହଜରେ ବୈଦିକ ରୀତିରେ ବିବାହ କରାଇଦେବା ପାଇଁ ହିନ୍ଦୁ ପୁରୋହିତବର୍ଗ ରାଜି ହେଉଛନ୍ତି କିପରି ?

ଆମର ଦେଶରେ ଧର୍ମ, ଜାତି, ଗୋତ୍ର, ବର୍ଗ, ଜାତକ ଆଦିକୁ ନେଇ ଏତେ ବାଛ ବିଚାର ଅଛି ଯେ ସହଜରେ ବରପାଇଁ କନ୍ୟା ବା କନ୍ୟାପାଇଁ ବରଟିଏ ମିଳୁନାହାଁନ୍ତି । ବିବାହ ପୂର୍ବରୁ ଜାତକ ମିଳନ ନହେଲେ, ବାହାଘର ଭାଙ୍ଗି ଯାଉଛି । ପୁରୋହିତମାନଙ୍କୁ ମାନି ନେଉଥିବା ସମାଜ, ବିଦେଶୀ ଦମ୍ପତିଙ୍କ ପୁନର୍ବିବାହ ବେଳକୁ ଆପତ୍ତି କରନ୍ତି ନାହିଁ କାହିଁକି ?

ପଶ୍ଚିମୀ ସଭ୍ୟତାର ମାନସିକତା ଅନୁସାରେ - ବିବାହ ବନ୍ଧନକୁ ଯଦିଓ ସାତଜନ୍ମର ସମ୍ପର୍କ ବୋଲି ମାନ୍ୟତା ନାହିଁ, ତଥାପି ସ୍ତ୍ରୀ ପୁରୁଷଙ୍କ ମଧରେ ଗୋଟିଏ ଭାବନାତ୍ମକ ବୁଝାମଣା ନିଶ୍ଚୟ ରହୁଥିଲା । ସେମାନଙ୍କର ସଂସର୍ଗରୁ ଜାତ ହେଉଥିବା ବୈଧ ସନ୍ତାନମାନଙ୍କୁ, ପାଳନ ପୋଷଣ କରିବାର ଉତ୍ତରଦାୟିତ୍ୱ ସେମାନଙ୍କର ବି ଥିଲା । ଯୌଥ ପରିବାରକୁ, ସେମାନେ ମଧ ଉପଭୋଗ କରୁଥିଲେ ।

ଭୌତିକବାଦର ବିକାଶ ସହିତ, ମଣିଷର ମାନସିକତାରେ ପରିବର୍ତ୍ତନ ହେଲା । ଯୌଥ ପରିବାର ଭାଙ୍ଗି ଛୋଟ ଛୋଟ ପରିବାର ଗଠନ ହେଲା । ତ୍ୟାଗର ଭାବନା ବଦଳରେ, ସ୍ୱାର୍ଥ ଭାବନା ଜନ୍ମ ନେଲା । ବିବାହ ସେମାନଙ୍କ ପାଇଁ କୌଣସି ପବିତ୍ର ବନ୍ଧନ ନୁହେଁ କିମ୍ବା ତଥାକଥିତ ସାତଜନ୍ମର ସମ୍ପର୍କ ମଧ ନୁହେଁ ବରଂ ବିବାହ ହେଉଛି କେବଳ ଭୋଗ ବିଳାସର ମାଧମ ମାତ୍ର । ସେଥିପାଇଁ କେବଳ ମୌଜମସ୍ତି କରିବାପାଇଁ, ଅଜସ୍ର ଧନ ଖର୍ଚ୍ଚ କରି,

ସେମାନେ ହିନ୍ଦୁରୀତିରେ ବିବାହ ପର୍ବ ପାଳନ କରିବାକୁ ଭାରତ ଆସନ୍ତି । ବିବାହ ଏକ ସାମାଜିକ ଉତ୍ତର ଦାୟିତ୍ୱ, ଯାହାକୁ ଗୁରୁତ୍ୱପୂର୍ଣ୍ଣ ଭାବେ ପାଳନକରିବା ଏକ ମାନବିକତା ଏବଂ ନୈତିକକର୍ତ୍ତବ୍ୟ ବୋଲି ସେମାନେ ମାନିବାକୁ ପ୍ରସ୍ତୁତ ନୁହନ୍ତି । ଏହି ଉତ୍ତରଦାୟିତ୍ୱକୁ ବହନ କରିବାପାଇଁ ଦୁହିଁଙ୍କ ମଧ୍ୟରୁ ଜଣେ ଯଦି ନଚାହିଁବ, ସେ ସେଥିପାଇଁ ସ୍ୱାଧୀନ ହୋଇଯିବାକୁ ଚାହୁଁଛି । ନିଜର ସାଥି କିମ୍ବା ସନ୍ତାନ ପ୍ରତି, ଭାବନାତ୍ମକ ସମ୍ପର୍କ ଛିନ୍ନ କରି ଅଲଗା ହୋଇଯିବା ପରେ ବି ସେ କୌଣସି ଅପରାଧବୋଧ ଅନୁଭବ କରେନାହିଁ । ସେଭଳି ଦାୟିତ୍ୱହୀନ ଦମ୍ପତିଙ୍କ ପାଇଁ, ଆମର ପୁରୋହିତମାନେ କେବଳ ଅର୍ଥ ଲୋଭରେ, ଆଧ୍ୟାତ୍ମିକ ଶାସ୍ତ୍ରର ନୀତି ନିୟମକୁ ବେଖାତିର କରି, ଏଭଳି ବିବାହକୁ ସମର୍ଥନ କରିବା କ୍ଷୋଭ ତଥା ଲଜ୍ଜାର ବିଷୟ ।

ଭାରତୀୟ ନାଗରିକମାନଙ୍କ ପାଇଁ ବିବାହ ଏକ ଖେଳ ବା ତାମସା ନୁହେଁ । ଏହା ପଛରେ ରହିଛି - ଦାୟିତ୍ୱବୋଧ, ତ୍ୟାଗ, ବୁଝାମଣା, ସମର୍ପଣ ଓ ଶପଥ । ସେଥିପାଇଁ ହିନ୍ଦୁ ବିବାହ ପଦ୍ଧତିରେ ଆଗରୁ ଅନେକ ବନ୍ଧନ ରହିଥିଲା । ହିନ୍ଦୁ ପଦ୍ଧତିରେ ବିବାହ କରିଥିବା ଦମ୍ପତିଙ୍କୁ ଛାଡପତ୍ର ପାଇବାପାଇଁ ଆଜି ବି ଦେଶର କାନୁନ ସହଜରେ ସ୍ୱୀକାର କରେନାହିଁ ।

ଦେଶର କାନୁନ ବ୍ୟବସ୍ଥା ଓ ପରିବର୍ତ୍ତିତ ସାମାଜିକ ମାନସିକତାକୁ ବିଚାର କଲେ ଆମେ ବି କିଛି କିଛି ପଶ୍ଚିମୀ ସଭ୍ୟତା ଦ୍ୱାରା ପ୍ରଭାବିତ ହୋଇଥିବା ଦେଖିପାରିବା । ଆମ ଦେଶର ଯୁବଗୋଷ୍ଠୀ ମଧ୍ୟ ବିବାହକୁ ସାତଜନ୍ମର ସମ୍ପର୍କ ବୋଲି ମାନିବାକୁ ପ୍ରସ୍ତୁତ ନୁହନ୍ତି । ଜୀବନସାରା ଦୁହେଁ ଦୁହିଁଙ୍କୁ ବରଦାସ୍ତ କରି ଦୁଃଖରେ ଜୀବନ ବିତେଇବାକୁ ଏକ ମୂର୍ଖାମୀ ବୋଲି ବୁଝି ସାରିଲେଣି । ଏହା ଆଜିର ପରିବେଶରେ ତର୍କସଙ୍ଗତ ମଧ୍ୟ । ଯଦି ମନ ଓ ବିଚାର ମେଳ ଖାଉନି, ସବୁବେଳେ ମତ ପାର୍ଥକ୍ୟ ରହୁଛି, ତେବେ ଖୁବ ଶୀଘ୍ର ଛାଡ଼ପତ୍ର ମିଳିଯିବା ଠିକ । କିନ୍ତୁ ଆମର କାନୁନ ବ୍ୟବସ୍ଥା ଅନେକ ପୁରୁଣା ସମୟରୁ ତିଆରି ହୋଇଛି ଏବଂ ସେଥିରେ ସଂଶୋଧନ ହୋଇନାହିଁ, ତେଣୁ ଆମର ଦମ୍ପତି ଛାଡପତ୍ର ପାଇଁ କୋର୍ଟ କଚେରୀକୁ ଦୌଡ଼ି ଦୌଡ଼ି ବୟସ ଗଡି ଯାଉଛି । କାନୁନ ବିଶେଷଜ୍ଞ ଓ ସରକାର ଯେତେ ଶୀଘ୍ର ଆଜିର ଆବଶ୍ୟକତାକୁ ଅନୁଭବ କରି, ଛାଡପତ୍ର ପ୍ରଣାଳୀକୁ ସରଳ କରିଦେବେ, ସେତେ ଶୀଘ୍ର ସମାଜରେ ଘଟୁଥିବା ଅନେକ ଅପରାଧ, ଯଥା : ଅନ୍ୟକୁ ହତ୍ୟା କରିବା କିମ୍ବା ନିଜେ ଆତ୍ମହତ୍ୟା କରିବା ଉପରେ ଅଙ୍କୁଶ ଲାଗିପାରିବ ।

ବୈଦିକ ବିବାହ ପଦ୍ଧତିରେ ବି ଏହି ସମସ୍ୟାର କୌଣସି ସମାଧାନ ଲେଖା ନାହିଁ । ସେଥିପାଇଁ କୁହାଯାଏ - "କନ୍ୟା ଶାଶୁଘରକୁ ଶବାରୀରେ ଯିବ କିନ୍ତୁ ମଲା ପରେ ଅର୍ଥୀରେ ହିଁ ବାହାରିବ ।"

ଆମର ବିବାହ ପଦ୍ଧତି ଯଦି ଅନ୍ୟ ଧର୍ମର ପଦ୍ଧତି ଠାରୁ ଶ୍ରେଷ୍ଠ ଭାବି, ବିଦେଶୀମାନେ ଆକୃଷ୍ଟ ହୋଇ ଆସୁଛନ୍ତି ବୋଲି କେହି ତର୍କ କରୁଛନ୍ତି, ତେବେ ସେମାନଙ୍କର ଏହା ଏକ ଭ୍ରାନ୍ତ ଧାରଣା । ଗାଈର ଲାଞ୍ଜଧରି ବୈତରଣୀ ପାର ହେବାକୁ ଚାହୁଁଥିବା, ଅନ୍ଧବିଶ୍ୱାସୀ ପୁରୋହିତବର୍ଗ ହିନ୍ଦୁ ଧର୍ମକୁ, ଏକ ବ୍ୟବସାୟ ରୂପେ ବ୍ୟବହାର କରୁଛନ୍ତି । କିଛି ବର୍ଷ ତଳେ 'ୱାଟର' ନାମକ ଏକ ହିନ୍ଦୀ ସିନେମାରେ ଥିବା ସମଲିଙ୍ଗୀ ସମ୍ପର୍କକୁ, ତୀବ୍ର ବିରୋଧ କରୁଥିବା ହିନ୍ଦୁ ପଣ୍ଡିତମାନେ ଆଜି ନିଜର ବିବାହ ପଦ୍ଧତିର ଉପହାସ କରୁଛନ୍ତି ବୋଲି ନିଜେ ହିଁ ବୁଝି ପାରୁନାହାନ୍ତି । ଆମର ନୈତିକତା ଓ ସଂସ୍କୃତି ପଛେ ଚୁଲିକୁ ଯାଉ, ସେମାନଙ୍କ ଘର, ଧନ ସମ୍ପତ୍ତିରେ ପୂର୍ଣ୍ଣ ହେଉଥାଉ ।

*****~*****

## ଦାବି

**ଆଜି ପର୍ଯ୍ୟନ୍ତ ଦୁନିଆର କୌଣସି ବୈଜ୍ଞାନିକ ଦାବି କରିନାହାନ୍ତି ଯେ ମୁଁ ଅମୁକ ଧର୍ମଶାସ୍ତ୍ରର ଜ୍ଞାନ ଅନୁସାରେ ଏହି ବୈଜ୍ଞାନିକ ଉପକରଣଟି ତିଆରି କରିଛି । କିନ୍ତୁ ଆସ୍ତିକମାନେ, ପୂରା ଜୋର ଲଗେଇ ପ୍ରମାଣ କରିବାକୁ ଚାହୁଁଛନ୍ତି ଯେ ସବୁ ବୈଜ୍ଞାନିକ ଜ୍ଞାନ ଆମର ଧର୍ମ ଶାସ୍ତ୍ରରେ ହିଁ ଅଛି । ଆମେ ବୁଝି ପାରୁନାହୁଁ, କିଏ ସତ କହୁଛି, କିଏ ମିଛ ?**

# ମଣିଷଙ୍କ ଦୁନିଆରେ, ଭଗବାନଙ୍କ (?) ସ୍ଥିତି

ଆଜିର ଦୁନିଆରେ ମଣିଷ ସମାଜ, ଯେଉଁ ଅସ୍ତବ୍ୟସ୍ତ ଢଙ୍ଗରେ ଚାଲିଛି, ତାହା ଦେଖି ବିଶ୍ୱାସ ହେଉନାହିଁ ଯେ ଈଶ୍ୱର ନାମକ କୌଣସି ଅତିମାନବୀୟ ମହାଶକ୍ତି ଅଛି, ଯିଏ ପୂଜା ପାଇବା ଯୋଗ୍ୟ । ଯେଉଁମାନେ ଦାବି କରୁଛନ୍ତି - ଈଶ୍ୱର ନିଶ୍ଚୟ ଅଛନ୍ତି ଓ ସବୁ ନିୟନ୍ତ୍ରଣ କରୁଛନ୍ତି । ତାହା ଏକ ଭ୍ରମ ଭଳି ହିଁ ଲାଗୁଛି । ଯଦି ଆମେ ମାନିବା ହଁ ! ସେ ଅଛନ୍ତି, ତେବେ ତାଙ୍କର କ୍ରିୟାକଳାପ ଦେଖି ଲାଗୁଛି - ଦୁନିଆର କୌଣସି ଜିଦଖୋର ସୈନିକ ଅଫିସର କିମ୍ବା ଏକ ନିଷ୍ଠୁର ରାଜାର କ୍ରିୟାକଳାପ ଠାରୁ ଈଶ୍ୱର ଜମା ଶ୍ରେଷ୍ଠ ନୁହେଁ । ଦୁନିଆରେ ବଳଶାଳୀ ଲୋକମାନଙ୍କ ଦ୍ୱାରା ନିରୀହ, ଗରିବ, ଅସହାୟ ଲୋକମାନଙ୍କୁ, ଯେଉଁ ଭଳି ଶୋଷଣ ଓ ହତ୍ୟା ହେଉଛି, ତାହା ତଥାକଥିତ ମଙ୍ଗଳକର୍ତ୍ତା ଈଶ୍ୱରଙ୍କ, ନ୍ୟାୟ ବା ତର୍କସଙ୍ଗତ  ବିଧାନ ବୋଲି କହିହେବନି । ବ୍ୟାଧିଗ୍ରସ୍ତ ହୋଇ ଭଗବାନଙ୍କୁ ଯେତେ ପ୍ରାର୍ଥନା କଲେ ମଧ ସେ ଶୁଣୁ ନାହାନ୍ତି ।

ଧର୍ମଗୁରୁମାନେ ଲୋକଙ୍କୁ ସାନ୍ତ୍ୱନା ଦେବା ପାଇଁ କୁହନ୍ତି - "ଏଥିରେ ଭଗବାନଙ୍କର କିଛି ଦୋଷ ନାହିଁ । କାରଣ ଭଗବାନ ପ୍ରକୃତିର ଗୋଟିଏ ବିଧାନ ଗଢି ଥୋଇଦେଲେ । କର୍ମ ମଣିଷ ହାତର କଥା । ଯିଏ ଯେମିତି କର୍ମ କରିବ ସିଏ ସେମିତି ଫଳ, ଏ ଜନ୍ମରେ ନହେଲେ ମଧ ଆସନ୍ତା ଜନ୍ମରେ ନିଶ୍ଚୟ ପାଇବ ।"

ସେମାନଙ୍କର କଥା ଶୁଣିଲେ ଠିକ ତର୍କସଙ୍ଗତ ଓ ପ୍ରଜାତାନ୍ତ୍ରିକ ଲାଗୁଛି । କାରଣ ଭଗବାନ ପ୍ରକୃତିକୁ ତିଆରିକରି ଶେଷରେ ସବୁ ବ୍ୟବସ୍ଥା ମଣିଷ ହାତରେ ଯଦି ଛାଡି ଦେଇଛନ୍ତି, ତେବେ ଏହା ବହୁତ ଉତ୍ତମ ବ୍ୟବସ୍ଥା । ଏହାଦ୍ୱାରା ମଣିଷ ସ୍ୱାଧୀନ ଭାବେ ନିଜ ଇଚ୍ଛାରେ ବଞ୍ଚି ପାରିବ ।

ଏଇଠି ପ୍ରଶ୍ନ ଉଠୁଛି - ଯଦି ଉପରୋକ୍ତ ବକ୍ତବ୍ୟଟି ସତ, ତେବେ ମଣିଷର ସନ୍ଦର୍ଭରେ ତଥାକଥିତ ଭଗବାନଙ୍କ ଅର୍ଥ କଅଣ ରହୁଛି ?

ଦ୍ୱିତୀୟ ପ୍ରଶ୍ନ - ଯଦି ଭଗବାନ ଏହା ସବୁ କରିବାର ଥିଲା, ତେବେ ସେ ସୃଷ୍ଟିର ସମସ୍ତ ବ୍ୟବସ୍ଥା ନ୍ୟାୟ ସଙ୍ଗତ, ସ୍ଥାୟୀ ଏବଂ ସୁଖମୟ ଭାବେ କଲେ ନାହିଁ କାହିଁକି ? ମଣିଷକୁ ଯଦି ନିଜ ପସନ୍ଦର ଜୀବନ ବାଛିବାକୁ କୁହାଯାଏ, କେଉଁ ମଣିଷ ଭଲା ଅସଙ୍ଗତି ଓ ଦୁଃଖକୁ ଗ୍ରହଣ କରି ବଞ୍ଚିବା ପାଇଁ ବାଛିବ ? ଦୁଃଖ, କଷ୍ଟ ସବୁ ତ ତା'ର ଅନିଚ୍ଛା ସତ୍ତ୍ୱେ ଭୋଗ କରିବାକୁ

ପଡୁଛି । ଏହାର ମଧ୍ୟ ଧର୍ମଗୁରୁମାନେ ଉତ୍ତର ଦେଇ କହୁଛନ୍ତି -"ସୃଷ୍ଟିର ଉଦ୍ଦେଶ୍ୟ, ଭଗବାନଙ୍କ ଆଖିରେ କିଛି ନିଶ୍ଚିତ ନାହିଁ । ଏହା ତ ତାଙ୍କର ଏକ ଲୀଳା ମାତ୍ର । "ଲୀଳା ଲିଙ୍କୈବ କାରଣମ" । ନିଜକୁ ହିଁ ନାନା ରୂପରେ ବ୍ୟକ୍ତକରି ଭଗବାନ ଖେଳଖେଳୁଛନ୍ତି।"

ଯଦି ଏହାକୁ ସତ୍ୟ ବୋଲି ମାନିବା, ତେବେ ପ୍ରଶ୍ନ ଉଠୁଛି - ଏହା କେମିତିକା ଖେଳ ? ଯେଉଁ ଖେଳରେ ଖେଳାଉଥିବା ଲୋକ ସୁଖ ପାଏ ଏବଂ ଖେଳରେ ଭାଗ ନେଉଥିବା ଲୋକ ଦୁଃଖପାଏ ? ଖେଳ ସେମିତିକା ହେବାଉଚିତ ଯେଉଁଥିରେ ତଥାକଥିତ ଭଗବାନ ଏବଂ ତାଙ୍କର ଚେତନ ପାର୍ଥିବ ଶରୀର ସମସ୍ତେ ସୁଖ ଓ ଆନନ୍ଦ ପ୍ରାପ୍ତ କରିପାରିବେ । ଏହା ଏକ ବିଚିତ୍ର କଥା ଯେ ଭଗବାନ ରୂପି ଖେଳାଳୀ ତ ଖୁବ ଆନନ୍ଦ ପାଉଛି, ଅଥଚ ସାରା ଦୁନିଆ ଏହି ଲୀଳା ଖେଳରେ ଭୟଗ୍ରସ୍ତ, ଆତଙ୍କିତ ଏବଂ ଅସହାୟ ଅନୁଭବ କରୁଛି ।

ଏହି ପ୍ରଶ୍ନର ଉତ୍ତର ଧର୍ମଗୁରୁମାନେ ଦାର୍ଶନିକ ଭାଷାରେ କହିଥାନ୍ତି - "ସୁଖ ଦୁଃଖତ ମାୟାଯୁକ୍ତ ଅନୁଭବ ମାତ୍ର । ପ୍ରକୃତିରେ ସୃଷ୍ଟି, ଭୌତିକ ଜଗତ ଏବଂ ତା'ର ସୁଖ ଦୁଃଖର ଅନୁଭବ ସ୍ୱପ୍ନ ଭଳି ପ୍ରତୀୟମାନ ହୋଇଥାଏ ।"

ବଡ ଅଦ୍ଭୁତ କଥା ଯେ ମଣିଷ ପ୍ରତ୍ୟକ୍ଷ ଭାବେ ସବୁକିଛି ଭୋଗ କରୁଥାଏ, ଦୁଃଖ କଷ୍ଟ ବି ପାଉଥାଏ । ତେଣେ ବସ୍ତୁ ସ୍ଥିତିକୁ ସ୍ୱୀକାର ନକରି ସେ କିଭଳି କଳ୍ପନା କରିବ ଯେ ମୁଁ ଯାହା ଅନୁଭବକରୁଛି ସବୁ ମାୟା ଓ ମିଛ ? ଏହିଭଳିଆ ଧର୍ମଗୁରୁମାନଙ୍କୁ ଗରମ କଡେଇ ଉପରେ ବସେଇ ଦିଆଗଲେ, ସେମାନେ ଯେତେବେଳେ କଷ୍ଟପାଇ ଚିତ୍କାର କରିବେ, ସେମାନଙ୍କୁ କୁହାଯିବ - ତୁମର ଏହି କଷ୍ଟ ସବୁ କାଳ୍ପନିକ, ସବୁ ମାୟା । ପ୍ରକୃତରେ ଆପଣ ତ ପରମ ଆନନ୍ଦରେ ବସିଛନ୍ତି । ସେତେବେଳେ ସେମାନେ ଭଲକରି ବୁଝି ପାରନ୍ତେ, ମାୟା ଓ ବାସ୍ତବତାରେ ପ୍ରଭେଦ ରହିଛି କେଉଁଠି ?

ଏମାନଙ୍କୁ ଆମେ ପଳାୟନବାଦୀ ବୋଲି କହିବା ନାହିଁ କାହିଁକି ? ଏମାନଙ୍କ ଅପେକ୍ଷା ତ ସେହି ନାସ୍ତିକମାନେ ଭଲ, ଯେଉଁମାନେ ପ୍ରକୃତ ଜିନିଷକୁ ଯଥାର୍ଥ ଆଖିରେ ଦେଖୁଛନ୍ତି ଓ ଉପଭୋଗ କରୁଛନ୍ତି । ଯଥାର୍ଥକୁ ଅସ୍ୱୀକାର କରି କିମ୍ବା ସମସ୍ୟା ଆଗରୁ ପଳାୟ କରିବା ପାଇଁ ସେମାନେ, ଅନ୍ତତଃ ତଥାକଥିତ ଈଶ୍ୱର, ଧର୍ମ, କର୍ମଫଳ ରୂପକ ଆଶାବାଡ଼ିର ସାହାଯ୍ୟ ନେଇ ଚାଲୁ ନାହାନ୍ତି ।

କେତେକ ଯୁକ୍ତି କରନ୍ତି ଯେ,"ଭଗବାନଙ୍କ ଖେଳ ସୁଖ ଓ ଦୁଃଖର ବିବିଧ ରୂପ । ମଣିଷ ରୂପରେ ଭଗବାନ ହିଁ ଖେଳୁଛନ୍ତି ଓ ଭୋଗ କରୁଛନ୍ତି ।" ଏଇଠି ପ୍ରଶ୍ନ ଉଠୁଛି - ଭଗବାନଙ୍କୁ ଖେଳିବାପାଇଁ ମଣିଷର ଶରୀରକୁ ବ୍ୟବହାର କରିବା ଆବଶ୍ୟକ ପଡୁଛି କାହିଁକି ? ଦ୍ୱିତୀୟରେ କେଉଁ ମଣିଷ ଭଲା କଷ୍ଟଦାୟକ ଖେଳ ଖେଳିବାକୁ ପସନ୍ଦ କରିବ ? ଭଗବାନଙ୍କ ଖେଳ ଯଦି ଆବଶ୍ୟକ ବୋଲି ମାନିବା, ତେବେ ସେ ମଧ ରୋମର 'ନିରୋ' ଠାରୁ ଆଦୌ କମ ଖିଆଲୀ ନୁହନ୍ତି । ଯିଏ ନିଜର ଖିଆଲୀ ପଣ ଯୋଗୁଁ ରୋମରେ ନିଆଁ ଲଗେଇ ଦେଇ, ନିଜେ ବଂଶୀ ବାଦନ କରି ତାମସା ଦେଖୁଥିଲା । ଯଦି ଭଗବାନଙ୍କ ପ୍ରବୃତ୍ତି, ମଧ୍ୟଯୁଗୀୟ ସାମନ୍ତ ଓ ରାଜାମାନଙ୍କ ଭଳି ହେବ, ଯେଉଁମାନେ ମଣିଷକୁ ହିଂସ୍ର ପଶୁମାନଙ୍କ ସହ ଖାଲି ହାତରେ, ଲଢେଇ କରିବାପାଇଁ ପଞ୍ଜୁରୀ ଭିତରକୁ, ଠେଲି ଦେଉଥିଲେ ଏବଂ ନିଜେ ସେହି ଅମାନବୀୟ ଯୁଦ୍ଧ ଦେଖି ମନୋରଞ୍ଜନ କରୁଥିଲେ, ତେବେ ମଣିଷକୁ ସୁରକ୍ଷା ଓ ଶାନ୍ତି ଦେବ କିଏ ? ଏହିଭଳି ଇଶ୍ୱରଙ୍କର ମଣିଷକୁ ଆବଶ୍ୟକ କଅଣ ?

ଏହି ସବୁ ବିଷୟରେ ମଣିଷ ଯେବେ ଶାନ୍ତ ଚିତ୍ତରେ, ନିର୍ଭୟ ହୋଇ ବିଚାର କରିବ, ତେବେ ସେ ନିଶ୍ଚୟ ବୁଝି ପାରିବ - ତଥାକଥିତ ଈଶ୍ୱର ଓ ତାଙ୍କ ଧର୍ମ ପ୍ରକୃତରେ ମଣିଷର କଳ୍ପନାରୁ ହିଁ ସୃଷ୍ଟି ହୋଇଛି । ଧର୍ମଗୁରୁମାନେ ଲୋକମାନଙ୍କୁ ଯେଉଁ ତଥ୍ୟ ଦେଉଛନ୍ତି, ତାହା ଦ୍ୱାରା ସମାଜରେ ଭିତିହୀନ ବିଶ୍ୱାସ, ଅହେତୁକ ଭୟ ଓ ଭ୍ରମାତ୍ମକ ଅବଧାରଣା ବୃଦ୍ଧି ପାଉଛି ।

ଧର୍ମବିଶ୍ୱାସୀ ମଣିଷର ଧନଭଣ୍ଡାର ଖାଲି ହୋଇ, ମଠ ଓ ମନ୍ଦିରର ଧନଭଣ୍ଡାର ଭର୍ତ୍ତି ହେବାରେ ଲାଗିଛି । ଅନ୍ୟ ପକ୍ଷରେ ଆଧାତ୍ମିକ ଦର୍ଶନ ଏବଂ ବ୍ୟବହାର ପକ୍ଷ ମଧ୍ୟରେ ସେମାନେ ଠିକ ଭାବେ ତାଳ ମେଳ ରଖି ପାରନ୍ତି ନାହିଁ । ବ୍ୟାସଦେବଙ୍କ ତରଫରୁ ଯେଉଁ ପଣ୍ଡିତ "ଏକୋ ବ୍ରହ୍ମ ଦ୍ୱିତୀୟୋ ନାସ୍ତି" ଏବଂ "ସର୍ବ ଖଲିଦ ବ୍ରହ୍ମ" ର ଅର୍ଥ ଓ ରହସ୍ୟ ବୁଝାଇଥାନ୍ତି, ସେୟାକୁ ବ୍ୟବହାର କ୍ଷେତ୍ରରେ ମଣିଷମାନଙ୍କ ଭିତରେ ଜାତିପ୍ରଥା ଯୋଗୁଁ ଅପବର୍ଣ୍ଣମାନେ ଜାତୀୟ ବ୍ୟବସ୍ଥାର ଚକ ତଳେ, ସବୁଠାରୁ ବେଶୀ ପେଷି ହେଉଥିବା କଥା ଆମେ ସମସ୍ତେ ଅନୁଭବ କରୁଛୁ ।

ସେହି ପ୍ରକାରେ ସାଧାରଣ ମଣିଷ ପାଇଁ, ଦର୍ଶନ ଆଉ ବ୍ୟବହାର ଅଥବା ସିଦ୍ଧାନ୍ତ ଓ କର୍ମ ଦୁଇଟିରୁ, ଗୋଟିଏ ସମ୍ପୂର୍ଣ୍ଣ ଭାବେ ଅର୍ଥହୀନ ହୋଇପଡେ । କାରଣ ଦର୍ଶନରେ ଯାହା ଥାଏ, ତାହା ବ୍ୟବହାରରେ ନଥାଏ , ଯାହା ବ୍ୟବହାରରେ ଚଳେ, ତାହା ଦର୍ଶନରେ ମିଳେନାହିଁ

********

# ଧର୍ମାନ୍ଧତାରୁ ରକ୍ତପାତ : ସାକ୍ଷୀ ଇତିହାସ

ଇସଲାମ ମତବାଦର ଧର୍ମଗୁରୁ ମହମ୍ମଦ ଇକବାଲ କହିଥିଲେ - "ମଜହବ ନହିଁ ଶିଖାତା ଅପସ ମେଁ ବୈର ରଖନା" - ଅର୍ଥାତ ପରସ୍ପର ଭିତରେ ଦ୍ୱେଷ ରଖିବା କଥା କୌଣସି ଧର୍ମ ଶିକ୍ଷା ଦିଏ ନାହିଁ , କିନ୍ତୁ ଇତିହାସରେ ଏହାର ଓଲଟା ଚିତ୍ର ଦେଖିବାକୁ ମିଳିଥାଏ । ଧର୍ମକୁ ଆଳ କରି ଏ ବିଶ୍ୱରେ, କେତେ ଯେ ଯୁଦ୍ଧ ହୋଇଛି, କେତେ ଯେ ପ୍ରାଣହାନୀ ଘଟିଛି, ତା'ର ହିସାବ ନାହିଁ । କିଛି ଉଦାହରଣ ଆମେ ଦେଖିବା -

ସପ୍ତମ ଶତାବ୍ଦୀର ଆରମ୍ଭରେ ଶୈବମତ ସମର୍ଥକ ସାଧୁ 'ଅପ୍ପର', 'ତିରୁଜ୍ଞାନ ସମ୍ବନ୍ଦର' ଏବଂ 'ସିରୁତୋଣ୍ଡ ନାୟନାରମାନେ' ଜୈନସମ୍ପ୍ରଦାୟ ଲୋକମାନଙ୍କ ବିରୋଧରେ ଯୁଦ୍ଧ ଘୋଷଣା କରିଥିଲେ । ସେମାନେ ଜୈନମାନଙ୍କ ଉପରେ, ନିଜର ସମର୍ଥକମାନଙ୍କ ଦ୍ୱାରା ଯେଉଁ ଅମାନବୀୟ କାଣ୍ଡ କରିଛନ୍ତି, ତା'ର କାହାଣୀ ତାମିଲ ଭାଷାର "ପେରିଆ ପୁରାଣମ" ନାମକ ଧର୍ମଗ୍ରନ୍ଥରେ ଲିପିବଦ୍ଧ ଅଛି । ମହେନ୍ଦ୍ର ବର୍ମନ ଦ୍ୱାରା ଜୈନମାନଙ୍କ ଉପରେ ଭୟାନକ ଅତ୍ୟାଚାର କରାଯାଉଥିଲା । ମହେନ୍ଦ୍ର ବର୍ମନ ପାଟଳୀପୁତ୍ରରେ ଥିବା ଜୈନମନ୍ଦିରକୁ ଧ୍ୱଂସ କରି, ସେହି ଜାଗାରେ ଶିବମନ୍ଦିର ନିର୍ମାଣ କରିଥିଲେ । ସୁନ୍ଦର ନାମକ ଜନୈକ ପାଣ୍ଡ୍ୟ ରାଜା ଆଠହଜାର ଜୈନମୁନିଙ୍କୁ ନିର୍ଯ୍ୟାତନା ଦେଇ ହତ୍ୟା କରିଥିଲେ । ଆର୍କଟର 'ତିରୁବତୁର' ମନ୍ଦିରର କାନ୍ଥ ଗୁଡିକରେ ଏହି ବିଭତ୍ସ କାହାଣୀର ଚିତ୍ର ଦେଖିବାକୁ ମିଳିଥାଏ ।

ଏକାଦଶ ଶତାବ୍ଦୀରେ ମହୀଶୂର ରାଜା ବିହନେବ (ବିଷ୍ଣୁ ବର୍ଦ୍ଧନ) ରାମାନୁଜାଚାର୍ଯ୍ୟଙ୍କ ଉପଦେଶ ଦ୍ୱାରା ପ୍ରଭାବିତ ହୋଇ, ଶହ ଶହ ଜୈନଙ୍କୁ ତେଲଘଣାରେ ପେଶି ମାରି ଦେଇଥିଲେ । ଶଶାଙ୍କ ବୁଦ୍ଧଗୟାର ସମସ୍ତ ବୌଦ୍ଧ ବିହାରକୁ ଭାଙ୍ଗି ଦେଇଥିଲେ ଏବଂ ବୋଧିଦ୍ରୁମକୁ ବି ଓପାଡି ଦେଇଥିଲେ । ସେହି ସମୟରେ ବୌଦ୍ଧମତକୁ ସମର୍ଥନ କରୁଥିବା ଲୋକମାନଙ୍କୁ ନିର୍ମମ ଭାବେ ହତ୍ୟା କରା ଯାଇଥିଲା ।

ମହାବଂଶ ପୁରାଣରେ ୨୩ ପରିଚ୍ଛେଦରେ ଏବଂ ସିଂହଳୀ ଲୋକକଥା ପୁସ୍ତକରେ ଲେଖା ଅଛି – "ଷୋଡଶ ଶତାବ୍ଦୀରେ ସିଂହଳ ଦ୍ୱୀପର ରାଜା ଜୟସିଂହ, ବୌଦ୍ଧଭିକ୍ଷୁମାନଙ୍କ ଉପରେ ଅତ୍ୟାଚାର କରିବା ଫଳରେ, ଚାରି ପାଞ୍ଚ ବର୍ଷ ମଧ୍ୟରେ, ସିଂହଳ ଦ୍ୱୀପରେ ଜଣେ ମଧ

ବୌଦ୍ଧଭିକ୍ଷୁ ଦେଖିବାକୁ ମିଳିଲେ ନାହିଁ । ରାଜା ଜୟସିଂହ ବୌଦ୍ଧ ଗ୍ରନ୍ଥାଗାରରେ ଥିବା ଗ୍ରନ୍ଥ ଗୁଡିକୁ ପୋଡି ନଷ୍ଟ କରି ଦେଇଥିଲେ ।

ଶଙ୍କର ଦିଗବିଜୟଙ୍କ ଶ୍ଳୋକଗୁଡ଼ିକରେ ବୌଦ୍ଧମାନଙ୍କୁ କିପରି ହତ୍ୟା କରା ଯାଇଥିଲା ତାହା ବର୍ଣ୍ଣନା କରାଯାଇଛି । "ସୁଧନ୍ୱ" ରାଜା ଶଙ୍କର ନିଜର ଭକ୍ତମାନଙ୍କୁ ଆଦେଶ ଦେଲେ – "ରାମେଶ୍ୱର ସେତୁଠାରୁ, ହିମାଳୟ ପର୍ଯ୍ୟନ୍ତ ବାସକରୁଥିବା ବୌଦ୍ଧମାନଙ୍କୁ ହତ୍ୟାକର, ସେମାନଙ୍କ ପରିବାରରେ ଥିବା ଆବାଳବୃଦ୍ଧବନିତାଙ୍କୁ, ମାରି ଶେଷ କରିଦିଅ । କେହି ଯଦି ତାଙ୍କୁ ଦୟା ପ୍ରଦର୍ଶନ କରନ୍ତି, ତାଙ୍କୁ ମଧ ମାରିଦିଅ ।"

'ଦିବ୍ୟବଦାନ' ନାମକ ପ୍ରସିଦ୍ଧ ବୌଦ୍ଧଗ୍ରନ୍ଥ ଏବଂ ତିବ୍ବତର ଲାମା ତାରାନାଥଙ୍କ ଇତିହାସରେ ଲେଖାଅଛି - "ପୁଷ୍ୟମିତ୍ର ସିଂହ, ପାଟଳୀପୁତ୍ର ଏବଂ ଜଳନ୍ଧର ଅଞ୍ଚଳରେ ଥିବା ସମସ୍ତ ବୌଦ୍ଧବିହାରକୁ ଜାଳିଦେଇଥିଲେ । ଶାକଳରେ ସେ ଘୋଷଣା କରିଥିଲେ - "ଯେଉଁ ବ୍ୟକ୍ତି ଯେତିକି ବୌଦ୍ଧଭିକ୍ଷୁଙ୍କ କଟାମୁଣ୍ଡ ଆଣିବ, ତାକୁ ମୁଣ୍ଡପିଛା ଏକ ଶତ ସ୍ୱର୍ଣ୍ଣମୁଦ୍ରା ଦିଆଯିବ ।"

ବୈଷ୍ଣବ ସମ୍ପ୍ରଦାୟର ପ୍ରବର୍ତ୍ତକ ଆଚାର୍ଯ୍ୟ ରାମାନୁଜ, ନିଜ ସହର ଶ୍ରୀରଙ୍ଗମ ଛାଡି ମହୀଶୂରକୁ ପଳାୟନ କରିଥିଲେ, କାରଣ ସେଠିକାର ଚୋଳବଂଶର ରାଜା "କୁଲୋତୁଙ୍ଗ"ଶୈବ ଧର୍ମକୁ ମାନୁଥିଲେ ଏବଂ ବୈଷ୍ଣବମାନଙ୍କୁ ବିରୋଧ କରୁଥିଲେ ।

ଶ୍ରୀରାମଙ୍କ ଭକ୍ତ ଏବଂ ରାମାୟଣର ଲେଖକ ତୁଳସୀ ଦାସଙ୍କୁ ବି ସେତେବେଳେ କଟ୍ଟର ବ୍ରାହ୍ମଣ ଏବଂ ଶିବଭକ୍ତମାନେ ପ୍ରତାଡନା କରିବାକୁ ପଛେଇ ନଥିଲେ । ସେଇକଥା ତୁଳସୀ ଦାସଙ୍କ ଦୋହାବେଳୀ, କବିତାବଳୀ ଓ ବିନୟପତ୍ରିକା ଆଦିରେ ଲେଖାଅଛି ।

ମହର୍ଷି ଦୟାନନ୍ଦ ସରସ୍ୱତୀଙ୍କ ଉପରେ ବି ପୁରାଣବାଦୀ ଓ ଅବତାରବାଦୀ ଆଧାତ୍ମପ୍ରେମୀ ବ୍ୟକ୍ତିମାନେ ବାରମ୍ବାର ଆକ୍ରମଣ କରିଥିଲେ ।

1932 ମସିହାରେ ହରିଜନ ଆନ୍ଦୋଳନ ପାଇଁ ଭ୍ରମଣ କରିବା ସମୟରେ ପୁନାରେ ମହାତ୍ମା ଗାନ୍ଧୀଙ୍କ ଉପରେ ଯେଉଁ ବୋମା ଫିଙ୍ଗାଯାଇଥିଲା, ତାହା ଜଣେ ହିନ୍ଦୁଧର୍ମାବଲମ୍ବୀ ହିଁ କରିଥିଲେ ।

ଆର୍ଯ୍ୟମାନଙ୍କ ହିଂସାବୃତ୍ତି ବିଷୟ ଆମର ପୁରାଣ ଗ୍ରନ୍ଥଗୁଡ଼ିକରେ ଭରିରହିଛି । ବିଭିନ୍ନ ଯଜ୍ଞବେଳେ ଅସଂଖ୍ୟ ପଶୁ ଏପରିକି ନରବଳୀ ମଧ ଦିଆଯାଉଥିବାର ଉଲ୍ଲେଖ ଅଛି ।

1500 ମସିହାରେ 'ଆଲବୁକର୍କ' ଗୋଆ ଉପରେ ବିଜୟ ପ୍ରାପ୍ତ କରି ସେଠାରେ ଥିବା ସମସ୍ତ ମସଜିଦକୁ ଭାଙ୍ଗି, ଚର୍ଚ୍ଚ ନିର୍ମାଣ କରିଥିଲେ । ଆଲବୁକର୍କ 1515 ମସିହାରେ ମୃତ୍ୟୁ ବରଣ କରିବା ପରେ, ସେଠାରେ ହିନ୍ଦୁମାନଙ୍କ ଉପରେ ମଧ ଅତ୍ୟାଚାର ବୃଦ୍ଧି ପାଇଲା । ପର୍ତ୍ତୁଗାଲର ସୈନିକମାନେ ପାଦରୀମାନଙ୍କ ନେତୃତ୍ୱରେ ହିନ୍ଦୁମାନଙ୍କୁ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବାକୁ ପ୍ରବର୍ତ୍ତାଇଲେ । ଏଣ୍ଟନିଓ ପୋଚ ନାମକ ଜଣେ ପାଦ୍ରୀ ବସଇ ପ୍ରଗଣାରେ ହଜାର ହଜାର ହିନ୍ଦୁମାନଙ୍କୁ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବାକୁ ବାଧ କରିଥିଲେ ।

କନେରୀ ଗୁମ୍ଫାମାନଙ୍କରେ ଯେଉଁ ହିନ୍ଦୁ ସନ୍ୟାସୀମାନେ ଥିଲେ, ସେମାନଙ୍କୁ ବନ୍ଧୁକର ଭୟ ଦେଖାଇ ଧର୍ମ ପରିବର୍ତ୍ତନ କରାଇ ଦେଇଥିଲେ । ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କ ଭୟାନକ ଅତ୍ୟାଚାର ସହି ନପାରି, ପର୍ତ୍ତୁଗାଲର ପୁରୁଣା ବସ୍ତି ଗୁଡ଼ିକରୁ, ହଜାର ହଜାର ହିନ୍ଦୁ ଗୃହ ତ୍ୟାଗକରି, ଅନ୍ୟତ୍ର ପଳାୟନ କରିଥିଲେ ।

ସ୍ପେନ ଓ ପର୍ତ୍ତୁଗାଲ ଦୁଇଟି ପଡୋଶୀ ରାଜ୍ୟ । ସେଠାରେ ମଧ ସେହି ଧାର୍ମିକ ଉନ୍ମାଦ ଲାଗି ରହିଥିଲା । ଶେଷରେ ପର୍ତ୍ତୁଗାଲିମାନେ ଭାରତକୁ, ଖ୍ରୀଷ୍ଟିୟାନ ମତବାଦ ପ୍ରଚାର କରିବାକୁ ଆସି, ଯେଉଁ ଅମାନବୀୟ ପନ୍ଥା ଗ୍ରହଣ କରିଥିଲେ, ତାହା ଅତି ବର୍ବରୋଚିତ ଓ ଭୟାନକ ପନ୍ଥା ଥିଲା । ପର୍ତ୍ତୁଗାଲର ରାଜା 'ଇମେନ୍ୟୁୟଲ' ପେଡ୍ରୋଅଲବରେଜକୁ ଗୋଟିଏ ଆଜ୍ଞାପତ୍ର ଦେଇଥିଲେ । ସେଥିରେ ଲେଖାଥିଲା - "ମୁସଲମାନ ଏବଂ ଅନ୍ୟ ସମ୍ପ୍ରଦାୟର ଲୋକମାନଙ୍କୁ ଖଣ୍ଡାରେ ଆକ୍ରମଣ କରିବା ପୂର୍ବରୁ ଆମର ପାଦ୍ରୀମାନେ, ପ୍ରଥମେ ଧାର୍ମିକ ପ୍ରଭାବ ପକାନ୍ତୁ । ଯଦି ସେମାନେ ପାଦ୍ରୀଙ୍କ ସହ ଏକମତ ହୋଇ ଧାର୍ମିକ ମତବାଦ ପରିବର୍ତ୍ତନ ନ କରନ୍ତି ତେବେ ସେମାନଙ୍କ ଉପରେ ଖଣ୍ଡା ଓ ବନ୍ଧୁକ ବ୍ୟବହାର କରି ପରାସ୍ତ କରିବାକୁ ଚେଷ୍ଟା କରିବ"।

1564 ମସିହାରେ ଏଣ୍ଟନିୟୋ ନୋରୋନହା ନାମକ ଏକ ଧର୍ମାନ୍ଧ ବ୍ୟକ୍ତି ଗୋଆରେ ଶାସନ କରିବାକୁ ଆସିଲେ । ସେ ଗୋଆର ପାଦ୍ରୀମାନଙ୍କୁ ସମ୍ପୂର୍ଣ୍ଣ ସୈନିକ ସହାୟତା ଦେଲେ । 'ସାଷ୍ଟି' ଦ୍ୱୀପରେ କିଛି ପାଦ୍ରୀ ପର୍ତ୍ତୁଗାଲି ସୈନିକମାନଙ୍କୁ ସାଙ୍ଗରେ ନେଇ, ହିନ୍ଦୁମାନଙ୍କ ମନ୍ଦିର ଭାଙ୍ଗିବା ଆରମ୍ଭ କରିଦେଲେ । ସ୍ଥାନୀୟ ଅଧିବାସୀମାନେ ଏହାର ପ୍ରତିବାଦ ସ୍ୱରୂପ, ସୈନିକ ଓ ପାଦ୍ରୀମାନଙ୍କ ସହ ଲଢେଇ କରି, ସେମାନଙ୍କୁ ପରାଜିତ କରିଦେଇଥିଲେ । ଏହାର ପ୍ରତିଶୋଧ ନେବାପାଇଁ ବହୁ ସଂଖ୍ୟାରେ ସୈନିକ ସେଠାକୁ ଆସିଲେ ଏବଂ ଉକ୍ତ ଦ୍ୱୀପର ସମସ୍ତ ଅଧିବାସୀଙ୍କୁ ହତ୍ୟା କରି, ସେମାନଙ୍କ ବାସସ୍ଥାନ ଗୁଡିକରେ ନିଆଁ ଲଗେଇ ଧ୍ୱଂସ କରିଦେଲେ ।

ଅନ୍ୟ ଏକ ଉଦାହରଣ - ପୋପଙ୍କ ଆଜ୍ଞା ପାଇ ୟୁରୋପର ଖ୍ରୀଷ୍ଟିୟାନ ରାଜା ଅନେକ ପ୍ରକାର ଦଣ୍ଡ ପ୍ରଣୟନ କରିଥିଲେ । ଅପରାଧର ବିଚାର ପାଇଁ ଚର୍ଚ୍ଚର ନିର୍ଦ୍ଦେଶରେ ବିଶେଷ ଅଦାଲତ ଗଠନ କରାଯାଉଥିଲା । ଏହାକୁ 'ଇନକ୍ୱିଜିସନ' କୁହାଯାଉଥିଲା । ଏହି ଅଦାଲତର ନିଷ୍ପତିକୁ ବିରୋଧକରି ଅନ୍ୟ କୌଣସି ଅଦାଲତରେ ଅପିଲ କରାଯାଇ ପାରୁନଥିଲା । ଏହି ଅଦାଲତର ସବୁଠାରୁ କଠୋର ଦଣ୍ଡ ଥିଲା - ଅପରାଧୀକୁ ଜୀବନ୍ତ ଦଗ୍ଧକରି ମାରିବା । ଅଭିଯୁକ୍ତ କୌଣସି ଓକିଲ ଦେଇ ପାରୁନଥିଲେ କିମ୍ବା ତାଙ୍କ ପକ୍ଷରୁ କୌଣସି ସାକ୍ଷ୍ୟ ପ୍ରମାଣମଧ ଦେଇ ପାରୁନଥିଲେ ।

ଏଇଥିରୁ ଅନୁମାନ କରିହେଉଛି - ଉକ୍ତ ଅଦାଲତଗୁଡ଼ିକର ଦଣ୍ଡିବା ଶକ୍ତି କେତେ ଅମାନବୀୟ ଥିଲା । ଇତିହାସରୁ ଜଣା ପଡେ ଯେ, ସ୍ପେନର 'ଇନକ୍ୱିଜିସନ' ଅଦାଲତର ଅଧକ୍ଷ 'ଟୋର୍କୀମାଡା' ନିଜର ଅଠରବର୍ଷର କାର୍ଯ୍ୟକାଳ ମଧରେ 1,14401ବ୍ୟକ୍ତିଙ୍କୁ ଜେଲ ଭିତରେ ନିର୍ଯ୍ୟାତନା ଦେବା ପରେ, ଶେଷରେ ପ୍ରତ୍ୟେକଙ୍କୁ ନିଆଁରେ ପୋଡ଼ି ହତ୍ୟା କରାଇଥିଲେ ।

ମଧ ଯୁଗରେ ପ୍ରାୟ ଦୁଇ ଦଶକ ପର୍ଯ୍ୟନ୍ତ ଖ୍ରୀଷ୍ଟିୟାନ ଓ ମୁସଲମାନ ହୋଲି ୱାର ନାମରେ ସଂଘର୍ଷ ଜାରି ରଖିଥିଲେ । ସପ୍ତମ ଶତାବ୍ଦୀରେ ହିନ୍ଦୁ ଓ ମୁସଲମାନ ସୈନିକମାନଙ୍କ ମଧରେ ଜିହାଦ ହୋଇଥିଲା । ହିନ୍ଦୁ ଧର୍ମରେ ଗୋଟିଏ ଧାର୍ମିକ ମତବାଦ ପାଇଁ ଯୁଦ୍ଧ କରୁଥିବା ଯୋଦ୍ଧାମାନଙ୍କ ଭିତରେ ମଧ ଏକତାର ଅଭାବ ଦେଖା ଯାଇଥାଏ । କାରଣ ଧର୍ମ ଭିତରେ ବି ଅନେକ ବର୍ଗ ଓ ଜାତିର ଲୋକ ରହୁଥିବାରୁ ପରସ୍ପର ଭିତରେ ଲଢେଇ ହୋଇଥାଏ ।

ସମସ୍ତ ମୁସଲମାନ ଦେଶ ସିହା ଓ ସୁନ୍ନୀ, ଏପରି ଦୁଇଟି ବର୍ଗରେ ବିଭକ୍ତ ହୋଇଛି । ସେମାନଙ୍କର ଆଲ୍ଲା ଏକ ବୋଲି କହୁଥିଲେ ମଧ ଦୁଇବର୍ଗ ଭିତରେ କେବେ ବି ଶାନ୍ତି ରକ୍ଷା ହୋଇ ପାରିଲା ନାହିଁ । ଇରାକରେ ସିହା ଓ ସୁନ୍ନୀ ସଂଘର୍ଷ ଯୋଗୁଁ, ଲକ୍ଷ ଲକ୍ଷ ଲୋକ ପ୍ରାଣ ହରାଇଛନ୍ତି ।

ପାକିସ୍ଥାନ ଗୋଟିଏ ମୁସଲମାନ ଦେଶ । ସେଠାରେ ସୁନ୍ନୀମାନଙ୍କ ସଂଖ୍ୟା ପ୍ରାୟ ଅଶୀଭାଗ ଓ ସିହାମାନଙ୍କ ସଂଖ୍ୟା ଖୁବ କମ କିନ୍ତୁ କେହି କାହାଠାରୁ କମ ନୁହନ୍ତି । ଏହି ଦୁଇ ବର୍ଗର ନିଜସ୍ୱ ଆତଙ୍କବାଦୀ ସଙ୍ଗଠନ ରହିଛି । ସମୟ ସୁବିଧା ଅନୁସାରେ, ବିରୋଧୀ ବର୍ଗ ମସଜିଦଗୁଡିକରେ ନମାଜ ପଢୁଥିବା ସମୟରେ ବନ୍ଧୁକ, ବୋମା ଆଦି ବ୍ୟବହାର କରି ନିର୍ଦୋଷ

ଲୋକମାନଙ୍କୁ ହତ୍ୟା କରୁଛନ୍ତି । ସେ ଦେଶର ଶାସନ ଡୋର ମୌଳବାଦୀମାନେ ହିଁ ଧରି ରଖିବାକୁ ସର୍ବଦା ଚେଷ୍ଟା କରୁଛନ୍ତି । ପରୋକ୍ଷ ଭାବେ ସେହିମାନେ ହିଁ ଶାସନ କର୍ତ୍ତା ।

କେବଳ ଧର୍ମ ନାମରେ ଘଟିଥିବା ସଂଘର୍ଷ ଓ ଯୁଦ୍ଧରେ ପ୍ରାଣ ହରାଇଥିବା ଜନସଂଖ୍ୟା ସମ୍ପର୍କରେ ଇତିହାସ ପୃଷ୍ଠାରୁ କିଛି ଉଦାହରଣ ଦେଖନ୍ତୁ - ଗତ 500 ବର୍ଷ ତଳେ ସ୍ପେନର 10 ହଜାର ଲୋକଙ୍କୁ ମାରି ଦିଆଗଲା ଏବଂ ଏକଲକ୍ଷରୁ ଉର୍ଦ୍ଧ୍ୱ ଲୋକଙ୍କୁ ଜେଲରେ ଭୋକ ଉପାସରେ ମରିବା ପାଇଁ ବାଧ କରା ଯାଇଥିଲା ।

'ଗିନିଜ ବୁକ ଅଫ ୱାର୍ଲଡ ରେକର୍ଡ'ର କୁଡ଼ିଶିଆଇ କ୍ୟାଟେଗରୀ ପୃଷ୍ଠାରେ "କ୍ରାଇମ ମାସ କିଲିଙ୍ଗ" ଶିରୋନାମାରେ ଗୋଟିଏ ଚିନ୍ତନୀୟ କଥା ଲେଖାଅଛି - "ଧର୍ମ ନାମରେ ହୋଇଥିବା ଯୁଦ୍ଧରେ ଧାର୍ମିକ ଲୋକମାନଙ୍କ ଅପେକ୍ଷା ନିରୀଶ୍ୱରବାଦୀ ଲୋକ ବେଶୀ ପ୍ରାଣ ହରାଇଛନ୍ତି । ଅର୍ଥାତ କୌଣସି ଧର୍ମକୁ ମାନୁନଥିବା ନିରୀଶ୍ୱରବାଦୀ ଲୋକମାନଙ୍କୁ ସଭିଏଁ ହତ୍ୟା କରିବାକୁ ଆଗେଇ ଆସନ୍ତି ।

ଧର୍ମ ଗୁଡ଼ିକରେ ଏହିଭଳି ଅନେକ ଉଦାହରଣ, ଆମକୁ ଇତିହାସ ପୃଷ୍ଠାରେ ପଢ଼ିବାକୁ ମିଳୁଛି - ଗୋଟିଏ ଧାର୍ମିକ ମତବାଦର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ପାଇଁ ଅନ୍ୟ ଧାର୍ମିକ ଲୋକମାନଙ୍କୁ ନିର୍ଯ୍ୟାତନା ଦେଇ, ନିର୍ମମ ଭାବେ ହତ୍ୟା କରାଯାଉଛି । ଆଜିର ବୈଜ୍ଞାନିକ ଯୁଗରେ ମଧ ଏହି ପ୍ରକ୍ରିୟା ଚାଲୁ ରହିଛି । ଧର୍ମ ନାମରେ ଶହ ଶହ ବର୍ଷ ଧରି ଶାସକ ଓ ଧାର୍ମିକ ନେତା ନିଜ ନିଜର ସ୍ୱାର୍ଥ ସିଦ୍ଧି ପାଇଁ ସାଧାରଣ ଜନତାଙ୍କୁ ଲୁଟି ଚାଲିଛନ୍ତି ।

ଧର୍ମ ଯୁଦ୍ଧ ହେଉ ବା ରାଜନୈତିକ - ଯୁଦ୍ଧରେ ଯେଉଁ ସୈନିକମାନେ ମୃତ୍ୟୁ ବରଣ କରନ୍ତି, ସେମାନଙ୍କର ସ୍ତ୍ରୀମାନେ ବିଧବା ହୋଇ ଯାଆନ୍ତି । ଅନେକ ସ୍ଥଳରେ ଜିତିଥିବା ଦଳର ସୈନିକମାନେ, ପରାଜିତ ଦଳର ସ୍ତ୍ରୀମାନଙ୍କୁ ବଳ ପୂର୍ବକ ଉଠେଇ ନେଇ ଯାଆନ୍ତି । କେତେକ ସେମାନଙ୍କର ଯୌନ ଶୋଷଣ କରି ଛାଡି ଦିଅନ୍ତି, ଆଉ କେତେକ ଧର୍ମ ପରିବର୍ତ୍ତନ କରି 'ରକ୍ଷିତା ' ଭାବେ ରଖି ଦିଅନ୍ତି ।

ଇତିହାସକୁ ବାଦ ଦେଇ ଯଦି ଆମେ ସ୍ୱାଧୀନ ଭାରତରେ, ଘଟୁଥିବା ଘଟଣା ଗୁଡ଼ିକ ଉପରେ ଦୃଷ୍ଟିପାତ କରିବା, ତେବେ ଜାଣିପାରିବା - ଭାରତରେ ଧାର୍ମିକ ସଂଘର୍ଷ ଓ ସାମ୍ପ୍ରଦାୟିକ ହାଣକାଟର ଏକ ଲମ୍ବା ତାଲିକା ରହିଛି । 1947 ମସିହାରେ ଦେଶର ବିଭାଜନ ହେବା ପରଠାରୁ, ଧାର୍ମିକ ଉନ୍ମାଦରେ ମାତିଥିବା ଲୋକମାନଙ୍କର ଏକ ମାତ୍ର ଲକ୍ଷ ଥିଲା ଯେ, ଅନ୍ୟ

ଧର୍ମର ଲୋକମାନଙ୍କୁ ମାରି ଶେଷ କରିଦିଅ ଏବଂ ଦରକାର ପଡିଲେ ଧର୍ମ ନାମରେ ମୃତ୍ୟୁ ବରଣ କର, ସିଧା ସ୍ୱର୍ଗକୁ ଯାଇ ଭଗବାନଙ୍କ ପାଖରେ ରୁହ ।

ମୋଟ ଉପରେ ଧର୍ମ ପାଇଁ ଦୁନିଆରେ ଯେତିକି ଯୁଦ୍ଧ ହୋଇଛି, ଅନ୍ୟ କୌଣସି କାରଣ ପାଇଁ ସେତେ ହୋଇନାହିଁ । ଧର୍ମନାମରେ ଯେତିକି ଲୋକ ବଳି ପଡିଛନ୍ତି, ଅନ୍ୟ କାରଣରୁ ସେତିକି ବଳି ପଡ଼ିନାହାନ୍ତି । ଉପରୋକ୍ତ ସମସ୍ତ ଘଟଣାକୁ ଅନୁଧ୍ୟାନ କଲେ, ଆମେ ବୁଝି ପାରିବା - ଧର୍ମର ଦ୍ୱାହି ଦେଇ ଯେଉଁ ଧର୍ମଗୁରୁ ବା ନେତାମାନେ ଜେହାଦ ବା ଯୁଦ୍ଧ ଭିତରକୁ ଆମକୁ ଠେଲି ଦେଉଛନ୍ତି, ସେମାନଙ୍କର ଅସଲ ଉଦ୍ଦେଶ୍ୟ ବୁଝିବାକୁ ଚେଷ୍ଟା କରିବା ଉଚିତ । ଯୁଦ୍ଧରେ ମୃତ୍ୟୁ ବରଣ କରୁଥିବା ବ୍ୟକ୍ତିଟିଏ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ଜୈନ ବା ବୌଦ୍ଧ ନୁହେଁ, ସେ ହେଉଛି ଜଣେ ସାଧାରଣ ମଣିଷ । ଆସନ୍ତୁ, ସମସ୍ତେ ମିଳି ମିଶି ମାନବିକତାକୁ ପାଳନ କରିବା ଓ ମଣିଷକୁ ରକ୍ଷା କରିବା । ତେବେ ଯାଇ ଏ ଦୁନିଆ ଆହୁରି ସୁନ୍ଦର ଓ ସୁଖମୟ ହୋଇପାରିବ ।

********

## ହେତୁବାଦୀ ପ୍ରଶ୍ନ

କେତେକ ଦେବୀ ଓ ଦେବତାଙ୍କ ମୂର୍ତ୍ତି ହାତରେ ବିଭିନ୍ନ ପ୍ରକାର ଅସ୍ତ୍ରଶସ୍ତ୍ର ଧରିଥିବା ଦୃଶ୍ୟ ଦେଖି ମୋ ଭଳି ମୂଢ଼ମତିମାନଙ୍କ ମନରେ କିଛି ପ୍ରଶ୍ନ ଉଠୁଛି -

ଦେବୀ ଓ ଦେବତାମାନେ ତ ସର୍ବଶକ୍ତିମାନ ଓ ସର୍ବଜ୍ଞ, ସେମାନେ ପୁଣି ଅସ୍ତ୍ରଶସ୍ତ୍ର ଧରିବା କ'ଣ ଦରକାର?

ଦୈବୀଶକ୍ତିବଳରେ କ'ଣଦୁଷ୍ଟମାନଙ୍କର ହିଂସ୍ର ପ୍ରବୃତ୍ତିକୁ ପରିବର୍ତ୍ତନ କରିହେବନି?

ଅସ୍ତ୍ରଶସ୍ତ୍ର ଧରିବା ଅର୍ଥ - କାହାକୁ ବଧ କରିବା କିମ୍ବା ଆତ୍ମରକ୍ଷା କରିବା । ଯଦି କାହାକୁ ବଧ କରିବା ପାଇଁ ଅସ୍ତ୍ର ପ୍ରୟୋଗ କରୁଥା'ନ୍ତି, ତେବେ ତ ସେମାନେ ମହାପାପୀ ।

(କାହାକୁ ହତ୍ୟା କରିବା ପାପ ବୋଲି ଧର୍ମଶାସ୍ତ୍ରରେ ଲେଖାଅଛି)

ଯଦି ନିଜର ଆତ୍ମରକ୍ଷା ପାଇଁ ଅସ୍ତ୍ର ପ୍ରୟୋଗ କରୁଥା'ନ୍ତି, ତେବେ ସେମାନେ ସର୍ବଶକ୍ତିମାନ ନୁହଁନ୍ତି । ଏସବୁ ଈଶ୍ବରଙ୍କମାୟା ବା ଲୀଳା କହି ପ୍ରଶ୍ନକୁ ଏଡାଇ ଦିଅନ୍ତୁନାହିଁ ।

# ପ୍ରାଚୀନ ହିନ୍ଦୁସଂସ୍କୃତି ଏବଂ ଧର୍ମ ସୁଧାର

"ଭାରତରେ ପ୍ରାଚୀନ ହିନ୍ଦୁସଂସ୍କୃତି, ପୂର୍ବଭଳି ବଞ୍ଚିରହିଛି । ଆଜି ବି ଆମର ପରମ୍ପରା, କର୍ମକାଣ୍ଡ, ପରିବାର ଏବଂ ସାମାଜିକ ବ୍ୟବସ୍ଥାରେ, ବେଶୀ କିଛି ପରିବର୍ତ୍ତନ ଘଟିନାହିଁ । ଯାହା ବି ପରିବର୍ତ୍ତନ ହୋଇଛି ପରିସ୍ଥିତିର ବାଧ ବାଧକତାରେ ହୋଇଛି । କାରଣ କାହା ପାଖରେ ହୁଏତ ପରମ୍ପରାକୁ ପାଳନ କରିବାକୁ ସମୟ ନାହିଁ ତ, କାହା ପାଖରେ ଧୈର୍ଯ୍ୟ ନାହିଁ । ଧାର୍ମିକ ଲୋକମାନଙ୍କର ମାନସିକତାରେ କିନ୍ତୁ ପରିବର୍ତ୍ତନ ହୋଇନାହିଁ ।

"ମିସ୍ର, ୟୁନାନ ଓ ଚୀନ ଭଳି ଅନେକ ପ୍ରଗତିଶୀଳ ଦେଶରେ ପ୍ରାଚୀନ ସଂସ୍କୃତି ଓ ସଭ୍ୟତାର ଇତିହାସ ଲୁପ୍ତ ହୋଇଗଲାଣି । ସେମାନଙ୍କର ସ୍ୱରୂପ ସମ୍ପୂର୍ଣ୍ଣ ରୂପେ ବଦଳି ଯାଇଥିଲେ ବି ଆମର ମୂଳ ସଂସ୍କୃତି ପୂର୍ବ ଭଳି ସୁରକ୍ଷିତ ଅଛି । ଆମେ ଗର୍ବର ସହ କହିପାରିବୁ ଯେ, ଯଦି ମହର୍ଷି ମନୁ ଆଜି ବି କୌଣସି ହିନ୍ଦୁଘରେ ଜନ୍ମଗ୍ରହଣ କରିବେ, ସେ ଆଦୌ ଅସ୍ୱସ୍ତି ଅନୁଭବ କରିବେ ନାହିଁ । ମଣିଷମାନଙ୍କ ଦ୍ୱାରା ନିର୍ମିତ ଓ ବ୍ୟବହୃତ କିଛି ବୈଜ୍ଞାନିକ ଉପକରଣ ବା ଯନ୍ତ୍ର ବ୍ୟତୀତ ଅନ୍ୟ କିଛି ତାଙ୍କୁ ନୂଆ ଲାଗିବନାହିଁ ।"

ଉପରୋକ୍ତ ବକ୍ତବ୍ୟଟି, ଗୋଟିଏ ଆଧ୍ୟାତ୍ମିକ ଟିଭି ଚ୍ୟାନେଲରେ, ଜଣେ ଧର୍ମଗୁରୁ ଦେଇଥିବା ପ୍ରବଚନରୁ, ଶୁଣିବାକୁ ମିଳିଥିଲା । ଏହି ପ୍ରବଚନ ଦେଲାବେଳେ, ସେ ଗର୍ବରେ ଫୁଲି ଉଠିଥିଲେ । ଭକ୍ତମାନେ ମଧ୍ୟ ତାଳିମାରି, ସମର୍ଥନ କରିଥିଲେ । କାରଣ ପ୍ରତ୍ୟେକ ଭକ୍ତ, ଏହି ଗୌରବମୟ ଭାରତର ଅଧିବାସୀ ହୋଇଥିବାରୁ, ନିଜକୁ ଧନ୍ୟ ମନେ କରୁଥିଲେ ଏବଂ ଆମର ପ୍ରାଚୀନ ସଂସ୍କୃତି ବିଷୟରେ, ମହିମା ମଣ୍ଡନ କରି କୁହାଯାଉଥିବା ପ୍ରତ୍ୟେକଟି କଥା ଶୁଣି ଗର୍ବ ଅନୁଭବ କରୁଥିଲେ ।

ଆମେ ଯଦି ପୂର୍ବାଗ୍ରହକୁ ତ୍ୟାଗ କରି, ସୁସ୍ଥ ଚିତରେ, ତର୍କସଙ୍ଗତ ଭାବେ ଉପରୋକ୍ତ ବକ୍ତବ୍ୟ ଉପରେ ବିଚାର କରିବା, ତେବେ ଆମ ସଂସ୍କୃତିର ଅପରିବର୍ତ୍ତନ ସ୍ଥିତି ହେଉଛି, ଆମ ସମାଜର ଜଡତା ଏବଂ ଆମ ମସ୍ତିଷ୍କର ଅପାରଗତାର ହିଁ ପରିଣାମ । କାରଣ ସଂସାରର ପ୍ରତ୍ୟେକ ଜୀବିତ ପ୍ରାଣୀ, ସମୟାନୁକ୍ରମେ ବଦଳି ଯାଅନ୍ତି । ସ୍ଥିରତା କେବଳ ନିର୍ଜୀବ ପଦାର୍ଥମାନଙ୍କରେ ହିଁ ଦେଖାଯାଏ ।

ଇତିହାସ ଅଧ୍ୟୟନ କଲେ ଜାଣିପାରିବେ - ଯେଉଁ ସମାଜ ଜୀବନ୍ତ ଓ ଶକ୍ତି ସମ୍ପନ୍ନ ଥିଲେ, ସେହିମାନେ ନିରନ୍ତର ସମୟ ସହିତ ତାଳଦେଇ ନିଜକୁ ପରିବର୍ତ୍ତନ କରିପାରିଛନ୍ତି । ଯେଉଁ ସମାଜ ନିଷ୍ପ୍ରାଣ ଓ ଦୁର୍ବଳ ହୋଇ ରହିଗଲେ, ସେମାନେ ପରିବର୍ତ୍ତନକୁ ସ୍ୱୀକାର କରି ପାରିନାହାନ୍ତି । ସମୟ ଓ ଇତିହାସ ସର୍ବଦା ଗତିଶୀଳ, ସେଥିରେ ସ୍ଥିରତାର ଚିହ୍ନ ନାହିଁ । ଯଦି କେହି ଗୋଟିଏ ସ୍ଥାନରେ ପହଞ୍ଚି ଅଟକିଯାଏ, ସେ ଅନ୍ୟମାନଙ୍କ ଠାରୁ ପଛେଇଯାଏ । ଯେଉଁ ସମାଜ ଆଜି ବି ମଧ୍ୟଯୁଗୀୟ ମାନସିକତାରୁ ମୁକ୍ତ ହୋଇନାହିଁ, ସେହି ସମାଜକୁ ପଛୁଆ ସମାଜ **(Back ward Society)** ବୋଲି କୁହାଯାଏ ।

ଆମ ଦେଶରେ ସମାଜର ଜଡତା ଏବଂ ସମୟର ଗତିଶୀଳତା ମଧ୍ୟରେ ଏକ ପ୍ରକାର ବୁଝାମଣା ହୋଇଯାଇଛି । ବଦଳିଥିବା ସମୟ ସହିତ ଯଦିଓ କିଛି କିଛି ନୂଆ ପରମ୍ପରା, ନୂଆ ଧାର୍ମିକ ବିଶ୍ୱାସ ଏବଂ ନୂଆ କର୍ମକାଣ୍ଡ ପଦ୍ଧତି ଭାରତୀୟ ସମାଜରେ ସ୍ଥାନ ପାଇଛି, ହେଲେ ଏହି ନୂତନ ବିଧି ବିଧାନ - ପୁରୁଣା କାଳର ପରମ୍ପରା, କର୍ମକାଣ୍ଡ ଉପରେ ମତ ପାର୍ଥକ୍ୟ ଓ ବିବାଦ ରହିଥିଲେ ମଧ ପୁରୁଣାକୁ ସମ୍ପୂର୍ଣ୍ଣ ଭାବେ ବହିଷ୍କାର କରି ପାରୁନାହିଁ । ପୁରୁଣା ବୃକ୍ଷରେ କଅଁଳୁ ଥିବା ନୂଆ ଶାଖା ଓ ପତ୍ର ଭଳି ନୂଆ କର୍ମକାଣ୍ଡକୁ ପୁରୁଣା ଉପାଦାନ ପ୍ରାପ୍ତ ହେବାକୁ ଲାଗିଲା । ବୈଦିକ ଯୁଗରୁ ଆଜି ପର୍ଯ୍ୟନ୍ତ ଯଦିଓ ଅନେକ ନୂତନ ତଥ୍ୟକୁ, ଭାରତୀୟ ସମାଜ ସ୍ୱୀକାର କରିଛି କିନ୍ତୁ କୌଣସି ପୁରୁଣା ତଥ୍ୟକୁ ବହିଷ୍କାର କରିବା ଭଳି ସାହାସ କରିନାହିଁ ।

ହିନ୍ଦୁ ମତବାଦ ପ୍ରକୃତରେ ଗୋଟିଏ ଅନିୟନ୍ତ୍ରିତ ଘଞ୍ଚ ଜଙ୍ଗଲ ସଦୃଶ୍ୟ । ଜଙ୍ଗଲରେ ଯେମିତି ଅନେକ ପ୍ରକାର ଛୋଟ ବଡ଼ ଘାସ,ଗୁଳ୍ମ,ଲତା, ବୃକ୍ଷ, ଖାଲ,ଢିପ, ପଥର, ଝରଣା ଆଦି ଅନିୟନ୍ତ୍ରିତ ଭାବେ ସ୍ୱୟଂ ବିକଶିତ ହୋଇଥାନ୍ତି, ସେହିଭଳି ହିନ୍ଦୁ ସମାଜରେ ପ୍ରଚଳିତ ମତ ଓ ମତାନ୍ତର ସ୍ୱୟଂ ବିକଶିତ ହୋଇ ନିୟନ୍ତ୍ରଣ ବାହାରେ ରହୁଛି । କାରଣ ପ୍ରତ୍ୟେକ ହିନ୍ଦୁ ନିଜ ହିନ୍ଦୁତ୍ୱକୁ ବ୍ୟକ୍ତିଗତ ସ୍ତରରେ ଏକ ଭିନ୍ନ ସ୍ୱରୂପ ଦେଇ ନିଜ ଦୃଷ୍ଟି କୋଣରୁ ହିଁ ଦେଖିଥାଏ । ସେଥିପାଇଁ ହିନ୍ଦୁ ମତବାଦରେ ଯେତିକି ଲୋକ, ସେତିକି ମତ ଦେଖିବାକୁ ମିଳିଥାଏ । ମତ ପାର୍ଥକ୍ୟ ରହୁଥିବାରୁ ସମସ୍ତେ ସ୍ୱୀକାର କରୁଛନ୍ତି - 'ନାନା ମୁନିଙ୍କର ନାନା ମତ' ।

"ହିନ୍ଦୁ ମତବାଦ" - ଆଦିମ ଯୁଗର ତଥାକଥିତ ମନ୍ତ୍ର ତନ୍ତ୍ର ଓ ପଶୁବଳି ଠାରୁ ଉପନିଷଦର ଅଦ୍ୱୈତ ଓ ବ୍ରହ୍ମଜ୍ଞାନ ପର୍ଯ୍ୟନ୍ତ, ପ୍ରାଗ ଐତିହାସିକ ଯୁଗର ବୃକ୍ଷ ଓ ନାଗ ପୂଜା ଠାରୁ

ଚାର୍ବାକଙ୍କ ଭୌତିକ ଦର୍ଶନ ପର୍ଯ୍ୟନ୍ତ, ବୈଦିକ ଯୁଗର ସର୍ବବେଦବାଦ ଠାରୁ ଶଙ୍କରାଚାର୍ଯ୍ୟଙ୍କ ପୂର୍ଣ୍ଣଅଦୈତବାଦ ପର୍ଯ୍ୟନ୍ତ, ଶୂଦ୍ରର ଦର୍ଶନମାତ୍ରେ ଅପବିତ୍ର ହୋଇଯାଉଥିବା ଦାକ୍ଷିଣାତ୍ୟ ବ୍ରାହ୍ମଣ ଠାରୁ ବିଷ୍ଠା ଓ ଶବ ମାଂସଭକ୍ଷଣ କରୁଥିବା ଅଘୋରୀ ସାଧୁ ପର୍ଯ୍ୟନ୍ତ, ଫଳମୂଳ ଭକ୍ଷକ ମୁନି ଋଷିମାନଙ୍କ ଠାରୁ ଶ୍ମଶାନରେ ମଣିଷ ମୁଣ୍ଡର ଖପୁରୀରେ ମଦିରା ପାନକରୁଥିବା ବାମମାର୍ଗୀ ସାଧକ ପର୍ଯ୍ୟନ୍ତ ସମସ୍ତଙ୍କୁ ନିଜ କୋଳରେ ସ୍ଥାନ ଦେଇଛି ।

ହିନ୍ଦୁ କିଏ ?

ମୂର୍ତ୍ତି ପୂଜକ ହିନ୍ଦୁ, ମୂର୍ତ୍ତି ଭଞ୍ଜକ ବି ହିନ୍ଦୁ, ବେଦକୁ ଅପୌରଷେୟ ଏବଂ ଯଜ୍ଞକୁ ଏକମାତ୍ର ଆଧ୍ୟାତ୍ମିକ କର୍ମ ବୋଲି ମାନୁଥିବା ଆର୍ଯ୍ୟସମାଜ ପୁରାଣ ବର୍ଣ୍ଣିତ ତଥ୍ୟ ସବୁ ମିଥ୍ୟା ବୋଲି ତାତ୍ପର୍ଯ୍ୟ କରୁଛନ୍ତି । ତଥାପି କୋଟି କୋଟି ଲୋକ, ଯେଉଁମାନେ ରାମ, କୃଷ୍ଣ, ଗଣେଶ, ଦୁର୍ଗା ଓ ଅନ୍ୟାନ୍ୟ ଦେବୀଦେବତାଙ୍କ ମୂର୍ତ୍ତି ତିଆରିକରି ମନ୍ଦିର ମାନଙ୍କରେ ପୂଜା କରୁଛନ୍ତି, ସେମାନେ ଯେତିକି ହିନ୍ଦୁ, ଆର୍ଯ୍ୟସମାଜ ମଧ୍ୟ ସେତିକି ହିନ୍ଦୁ ବୋଲି ମାନ୍ୟତା ପାଇଛି । ପଥର ଉପରେ ସିନ୍ଦୁର ଲଗାଇ ପୂଜା କରୁଥିବା ଗୋଷ୍ଠୀ ହିନ୍ଦୁ ଏବଂ କବୀର, ନାନକ ଓ ଦାଦୁଦୟାଲ ପନ୍ଥୀ ଭଳି ତଥାକଥିତ ନିର୍ଗୁଣ, ନିରାକାର ଶକ୍ତିର ଉପାସନା କରୁଥିବା ଗୋଷ୍ଠୀ ମଧ୍ୟ ହିନ୍ଦୁ । ଜାତି ବ୍ୟବସ୍ଥାକୁ ହିଁ ଧର୍ମର ଆଧାର ଏବଂ ନିଜ ସାଂସାରିକ ଜୀବନ ଭିତରେ ହିଁ ନିଜ ଧର୍ମକୁ ସୀମିତ ରଖୁଥିବା ସାଧାରଣ ଗୃହସ୍ଥ ମଧ୍ୟ ହିନ୍ଦୁ । ଅନ୍ୟ ଏକ ଜାତି ବିହୀନ ସମାଜର ସ୍ୱପ୍ନ ଦେଖୁଥିବା ବ୍ରାହ୍ମସମାଜ ମଧ୍ୟ ହିନ୍ଦୁ । ଏତେ ସବୁ ପାର୍ଥକ୍ୟ ଥିବା ଦେଖି, କେହି କ'ଣ ସଠିକ ଭାବରେ କହି ପାରିବ କି କିଏ ପ୍ରକୃତରେ ହିନ୍ଦୁ କିଏ ନାହିଁ ?

ଉପରେ କେବଳ ମତ ଓ ମତାନ୍ତର ଭିତରେ ଥିବା ବିଭିନ୍ନତା କଥା କୁହା ଯାଇଛି । ଆମେ ଯଦି ପ୍ରତ୍ୟେକ ଗୋଷ୍ଠୀର ପୂଜା ପଦ୍ଧତି ବିଷୟରେ ଆଲୋଚନା କରିବା, ତେବେ ଏକ ବିରାଟ ଗ୍ରନ୍ଥ ରଚନା କରିହେବ । ତେଣୁ ମୋଟ ଉପରେ ଆମେ କହିପାରିବା - ଇସଲାମ, ଖ୍ରୀଷ୍ଟିୟାନ କିମ୍ବା ୟେହୂଦୀ ମତବାଦ ଭଳି ହିନ୍ଦୁ ମତବାଦ ସୁପରିଭାଷିତ ଏବଂ ସୁବ୍ୟବସ୍ଥାପିତ ମତବାଦ ନୁହେଁ ।

ଆମେ ଦେଖୁଛୁ - ଜୋର୍ଡାନର ଜଣେ ମୁସଲମାନ ଏବଂ ଇଣ୍ଡୋନେସିଆର ଜଣେ ମୁସଲମାନଙ୍କ ଧାର୍ମିକ ଆସ୍ଥା ଏକା ଭଳି ଦେଖିବାକୁ ମିଳିଥାଏ । କାନାଡ଼ାର ଜଣେ କ୍ୟାଥୋଲିକ ଖ୍ରୀଷ୍ଟିୟାନ ଏବଂ ଅଷ୍ଟ୍ରେଲିଆର ଜଣେ କ୍ୟାଥୋଲିକ ଖ୍ରୀଷ୍ଟିୟାନଙ୍କ ବିଶ୍ୱାସ ଓ ପରମ୍ପରା ଏକା

ଭଳି ଥାଏ । କିନ୍ତୁ ଭାରତରେ ଦୁଇଜଣ ହିନ୍ଦୁଙ୍କ ଭିତରେ, ସମାନତା ଦେଖିବାକୁ ମିଳେନାହିଁ । କାହିଁକି ? ଏହା ଏକ ବିଚାରଣିୟ ବିଷୟ ।

ଏହାର ଉତ୍ତର ଦେବା ପାଇଁ ତର୍କ ଦିଆଯାଇଥାଏ – "ଆମେ ଅନ୍ୟ ଧାର୍ମିକ ମତାବଲମ୍ବୀମାନଙ୍କ ଠାରୁ ଅନେକ ଗୁଣରେ ସହିଷ୍ଣୁ । ଆମ ସମାଜରେ ଉଦାରତା ଏବଂ ବିଚାର ସ୍ୱତନ୍ତ୍ରତା ଥିବାରୁ, ସମସ୍ତେ ସ୍ୱତନ୍ତ୍ର ଭାବେ ନିଜ ପସନ୍ଦର ଦେବୀ ଦେବତାଙ୍କୁ, ପୂଜା ପାଠ କରିପାରୁଛନ୍ତି । ଏହି ତର୍କ ବା ଯୁକ୍ତି କେବଳ ବାଚାଳତା ନୁହେଁ, ଏହା ସମ୍ପୂର୍ଣ୍ଣ ଭାବେ ଆତ୍ମପ୍ରବଞ୍ଚନା କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ଭାରତୀୟ ଇତିହାସରୁ ସ୍ପଷ୍ଟ ଭାବେ ଜାଣିବାକୁ ମିଳୁଛି - ଏଠାରେ ବିଭିନ୍ନ ସମୟରେ ଧର୍ମ ସୁଧାର ପାଇଁ ବିଭିନ୍ନ ବୁଦ୍ଧିଜୀବୀଙ୍କ ଦ୍ୱାରା ପ୍ରୟାସ କରାଯାଇଛି । କିନ୍ତୁ ଏହି ପ୍ରୟାସ ଜନତାଙ୍କ ମଧ୍ୟରେ ବୈଚାରିକ କ୍ରାନ୍ତି ସୃଷ୍ଟି କଲାଭଳି ବ୍ୟାପକ ଉନ୍ମାଦ ସୃଷ୍ଟି କରି ପାରିନାହିଁ । ଧର୍ମ ସୁଧାରକଙ୍କ ବାର୍ତ୍ତା ଭାରତର ପୁରପଲ୍ଲୀରେ ବାସ କରୁଥିବା, ସରଳ ସ୍ୱଭାବର ଜନତାଙ୍କ ପାଖରେ ପହଞ୍ଚି ପାରେନାହିଁ । ଏହି ବାର୍ତ୍ତା ସେମାନଙ୍କ ଦୃଷ୍ଟିକୋଣ ହୁଏତ ବଦଳାଇ ଦେଇ ପାରିଥାନ୍ତା । ଧର୍ମ ସୁଧାରକମାନଙ୍କ ପ୍ରୟାସ ଯୋଗୁଁ, କିଛି ନୂଆ ବିଚାରଧାରା ଜନ୍ମନେଇ। ସତ କିନ୍ତୁ ପୁରୁଣା ପରମ୍ପରା ପୂର୍ବଭଳି ଜନମାନସରେ ସ୍ଥିରହୋଇ ରହିଗଲା । ଧିରେ ଧିରେ ନୂଆ ବିଚାରଧାରା ଗୁଡିକ ବି ପୁରୁଣା ବିଚାରଧାରା ସହିତ ମିଶି, ଏକାଭଳି ସ୍ଥାୟୀ ହୋଇଗଲା । କୌଣସି ସଂସ୍ଥାବଦ୍ଧ ବୈଚାରିକ କ୍ରାନ୍ତି ଆଜି ପର୍ଯ୍ୟନ୍ତ ଭାରତୀୟ ସମାଜରେ ଆସିଲାନାହିଁ । କାରଣ ଭାରତୀୟ ଜନମାନସ ପରସ୍ପର ବିରୋଧି ପରମ୍ପରା ସହ ଅସ୍ତିତ୍ୱକୁ ସମର୍ଥନ ଓ ସ୍ୱୀକାର କରିପାରୁଛି ।

ଆର୍ଯ୍ୟମାନଙ୍କ ଆଗମନ ପରେ, କିଛି ସମୟପାଇଁ ସାଂସ୍କୃତିକ ସ୍ତରରେ ଉତ୍ତେଜନ ଦେଖା ଦେଇଥିଲା । କାରଣ ବେଦରେ ବର୍ଣ୍ଣିତ ଧାର୍ମିକ ବିଶ୍ୱାସକୁ, ଆର୍ଯ୍ୟମାନେ ତାସଲ୍ୟ କଲେ । ପ୍ରଥମରୁ ପ୍ରଚଳିତ ଲିଙ୍ଗପୂଜାକୁ 'ଶିଶ୍ନଦେବା' କହି ବିଦ୍ରୁପ କଲେ କିନ୍ତୁ ପରବର୍ତ୍ତୀ କାଳରେ ସେହି ଆର୍ଯ୍ୟମାନେ ମଧ୍ୟ ଏହି ଲିଙ୍ଗପୂଜାକୁ ସ୍ୱୀକାର କଲେ । ସେହିଭଳି ଆର୍ଯ୍ୟମାନଙ୍କର ପ୍ରାକୃତିକ ଶକ୍ତି ସମ୍ପନ୍ନ ତଥାକଥିତ ଦେବତାମାନଙ୍କୁ ସ୍ଥାନୀୟ ବାସିନ୍ଦା ସହଜରେ ଗ୍ରହଣ କରିନେଲେ ।

ଦୁନିଆର ସମସ୍ତ ମାନବସମାଜ ଭଳି, ଏଠାରେ ବି ଆଦିମାନବମାନେ - ପାହାଡ଼, ନଦୀ, ସମୁଦ୍ର, ବୃକ୍ଷ, ପଶୁ ଓ ପକ୍ଷୀମାନଙ୍କୁ ତଥାକଥିତ ଦେବତାମାନି ପୂଜାକଲେ । ବୌଦ୍ଧିକ

ବିକାଶ ଯୋଗୁଁ ଆସନ୍ତା ଯୁଗମାନଙ୍କରେ ଏହି ତଥାକଥିତ ଦେବତାଗଣ, ଅନ୍ୟ ଦେଶର ସଂସ୍କୃତି ଭିତରୁ ଧିରେ ଧିରେ ଲୁପ୍ତ ହୋଇଗଲେ । ଅଥଚ ଆମ ଦେଶର ସଂସ୍କୃତିରେ, ସମସ୍ତେ ବଞ୍ଚି ରହିଲେ । ଆଜି ବି ଲୋକମାନଙ୍କର ମନରେ ଜୀବିତ ଅଛନ୍ତି ।

ପିତୃପୂଜା ବା ପିତରପୂଜା ମାନବ ଇତିହାସରେ, କେତେକ ସମୟରେ ସମଗ୍ର ଦୁନିଆରେ ପ୍ରଚଳିତ ଥିଲା । ଧାର୍ମିକ ବିକାଶର ପରବର୍ତ୍ତୀ ପିଢ଼ିମାନଙ୍କ ସମୟରେ, ଅନ୍ୟ ଦେଶର ପିତୃପୂଜା ସମାପ୍ତ ହୋଇଯାଇଥିଲେ ବି ଭାରତରେ ଏହା ପୂର୍ବଭଳି ଚାଲୁରହିଛି । ଯଦିଓ ଭାରତ ବି ବିକାଶ ପଥରେ ଅନେକ ପାଦ ଆଗେଇଯାଇଛି, ତଥାପି ପିତୃଶ୍ରାଦ୍ଧ ନାମରେ କର୍ମକାଣ୍ଡ ଚାଲିଛି ।

ତଥାକଥିତ ତନ୍ତ୍ରମନ୍ତ୍ର ହେଉଛି, ଆଧ୍ୟାତ୍ମିକତାର ଏକ ପ୍ରାଚୀନତମ ମାନ୍ୟତା । ପ୍ରାଚୀନ ଯୁଗରେ ଶତ୍ରୁ ବିନାଶ, ପୁତ୍ର ପ୍ରାପ୍ତି, ଯୁଦ୍ଧରେ ବିଜୟ ପ୍ରାପ୍ତି, ଠିକ ସମୟରେ ଉପଯୁକ୍ତ ପରିମାଣରେ ବର୍ଷା ହେବାପାଇଁ, ଭୂମିରେ ଅଧିକ ଫସଲ ଉତ୍ପାଦନ ପାଇଁ ସେହିସବୁ ତନ୍ତ୍ରମନ୍ତ୍ରର ପ୍ରୟୋଗ ହେଉଥିଲା । କିନ୍ତୁ ତନ୍ତ୍ରମନ୍ତ୍ର ଦ୍ୱାରା ସର୍ବଦା ସୁଫଳ ପ୍ରାପ୍ତ ହେଉନଥିବା କାରଣରୁ, ସନ୍ଦେହ ସୃଷ୍ଟି ହେଲା ।

ଆରବ ଦେଶର ଏକେଶ୍ୱରବାଦ, ୟେହୁଦି ଏବଂ ଇସଲାମ ମତବାଦର ଗୁରୁମାନେ ତଥାକଥିତ ତନ୍ତ୍ରମନ୍ତ୍ର, ପିତୃପୂଜା, ଏପରିକି ପ୍ରାକୃତିକ ଶକ୍ତିମାନଙ୍କର ପୂଜା ବି ସମାପ୍ତ କରିଦେଲେ । କିନ୍ତୁ ଭାରତୀୟ ସମାଜରେ ଏହି ପରମ୍ପରା ପୂର୍ବ ଭଳି ଆଜି ବି ରହିଛି ।

ଏ ଯୁଗରେ ଭାରତୀୟ ରାଜନେତାମାନେ, ନିଜର ଗାଦିର ସୁରକ୍ଷା ପାଇଁ, ଯଜ୍ଞ ଆଦି କରାଉଛନ୍ତି । ଧର୍ମ ଗୁରୁ ଓ ତାନ୍ତ୍ରିକମାନଙ୍କ ଦ୍ୱାରା ତନ୍ତ୍ରମନ୍ତ୍ର ପଢି ସେହି ସବୁ କର୍ମକାଣ୍ଡ କରାଉଛନ୍ତି । ଯାହା ପ୍ରାଚୀନ କାଳରେ ଅଜ୍ଞାନତା ବଶତଃ ଆଦିମାନବ ବର୍ଷା ହେବାପାଇଁ କିମ୍ବା ଶତ୍ରୁ ବିନାଶ କରିବାପାଇଁ କରୁଥିଲେ । ବୈଦିକ ଯୁଗରେ ଯଜ୍ଞବାଦର ପ୍ରଚଳନ ଅଧିକ ଥିଲା । ଜୀବନର ପ୍ରତ୍ୟେକ ଛୋଟବଡ଼ ଘଟଣା, ଯଜ୍ଞ ସହିତ ଯୋଡି ହୋଇ ରହିଥିଲା । 'ଅଥର୍ବବେଦ' ତଥାକଥିତ ତନ୍ତ୍ରମନ୍ତ୍ରରେ ହିଁ ଭରି ରହିଛି । ଅନ୍ୟ ତିନି ବେଦ ବିଶେଷ କରି 'ଯଜୁର୍ବେଦ'ରେ ଯଜ୍ଞ କରିବାପାଇଁ ବିଧିବିଧାନ ଭରି ରହିଛି । ଏହି ଯଜ୍ଞମାନଙ୍କରେ ବହୁ ସଂଖ୍ୟାରେ ଘୋଡା, ଗୋରୁ, ଗାଈ, ମଇଁଷି ଓ ଛାଗଳ ବଳି ଦିଆଯାଉଥିଲା ।

ଜୈନ ଏବଂ ବୌଦ୍ଧମାନଙ୍କ ପୂର୍ବରୁ ଉପନିଷଦ କାଳରେ ହିଁ କିଛି ଧର୍ମ ସୁଧାରକମାନଙ୍କ ଦ୍ୱାରା ଯଜ୍ଞବାଦର ବିରୋଧ ଆରମ୍ଭ ହୋଇ ଯାଇଥିଲା । ଉପନିଷଦ - ବ୍ରାହ୍ମଣଙ୍କୁ ଶ୍ରେଷ୍ଠତା ବଦଳରେ, କ୍ଷତ୍ରିୟଙ୍କୁ ଶ୍ରେଷ୍ଠ ସ୍ଥାନ ଦେଇଛି । ଯଜ୍ଞାବାଦକୁ ମୃତକର୍ମ କହି, ବ୍ରହ୍ମଜ୍ଞାନ ପ୍ରାପ୍ତ କରିବା ହିଁ ଏକମାତ୍ର ଆଧାତ୍ମିକ କର୍ତ୍ତବ୍ୟ ବୋଲି କହିଲେ କିନ୍ତୁ ନିଜର ସହାବସ୍ଥାନ ସ୍ୱଭାବ ଅନୁସାରେ, ଭାରତୀୟ ସମାଜ ନୂତନ ତଥାକଥିତ ବ୍ରହ୍ମଜ୍ଞାନ ସ୍ୱୀକାର କରିବା ସହିତ ଯଜ୍ଞବାଦକୁ ବି ନିଜର କରିରଖିଲା ।

ପରବର୍ତ୍ତୀ କାଳରେ ଜୈନମୁନି ଓ ବୌଦ୍ଧଭିକ୍ଷୁମାନେ ସମାଜରେ ବହୁ ମାତ୍ରାରେ ହେଉଥିବା ପଶୁବଳି, ବିରୋଧରେ ସ୍ୱର ଉତ୍ତୋଳନ କଲେ । ଜନମାନସ ଉପରେ ଏହାର ପ୍ରଭାବ ପଡିଲା ଏବଂ ଯଜ୍ଞ ଆଦି ସମୟରେ ପଶୁବଳି କମ ହୋଇଗଲା । ଯଜ୍ଞର ପରମ୍ପରା କିନ୍ତୁ ଚାଲୁ ରହିଲା । ସେଥିରେ ଆହୁତି ପାଇଁ ଗାଈ ଘିଅ, ବ୍ୟବହାର ହେଲା । ନିଆଁରେ ଗାଈଘିଅ ପୋଡିବା ଦ୍ୱାରା କାହାର କିଭଳି ଫାଇଦା ହେଉଛି, ଆଜି ପର୍ଯ୍ୟନ୍ତ କୌଣସି ଧର୍ମଗୁରୁ ତର୍କସଙ୍ଗତ ଉତ୍ତର ଦେଇ ନାହାନ୍ତି । ବୈଜ୍ଞାନିକ ତଥ୍ୟ ଅନୁସାରେ ଘିଅ ନିଆଁରେ ପୋଡିଲେ ଅଙ୍ଗାରକାମ୍ଳ ଗ୍ୟାସ ସୃଷ୍ଟିକରେ, ଯାହା ମଣିଷପାଇଁ ଲାଭ ଦାୟକ ନୁହେଁ ବରଂ କ୍ଷତିକାରକ ।

ତଥାକଥିତ ବ୍ରହ୍ମପ୍ରାପ୍ତି ପାଇଁ ଆବଶ୍ୟକ ଏକାଗ୍ରତା ଓ ଧ୍ୟାନ ସହିତ ଜୈନ ମୁନିମାନଙ୍କର ଦେହଦମନ ଓ ବୌଦ୍ଧ ଭିକ୍ଷୁମାନଙ୍କର ବୈରାଗ୍ୟ ମଧ ଯୋଡି ହୋଇଗଲା । ପରିଣାମ ସ୍ୱରୂପ କଷ୍ଟସାଧ 'ତପ' ସର୍ବୋଚ୍ଚ ଆଧାତ୍ମିକ କୃତ୍ୟ ହୋଇଗଲା । 'ଅଗ୍ନିତପ' ଦ୍ୱାରା ଶରୀରକୁ ପୀଡା ଦେବା, ପାଣି ଭିତରେ ଦୀର୍ଘ ସମୟ ଧରି ଠିଆ ହେବା, ଗଛରେ ଓଲଟା ଓହଳି ରହିବା, ପାହାଡର ଗରମଶୀଳା ଉପରେ ବସି ତପସ୍ୟା କରିବା, ନିର୍ଜଳା ଉପବାସ କରିବା, ଏପରିକି ସିଦ୍ଧି ପ୍ରାପ୍ତ କରିବା ପାଇଁ ନିଜର କୌଣସି ଅଙ୍ଗ ଛେଦନ କରିବା ଆଦି ଧାର୍ମିକ କର୍ମକାଣ୍ଡରେ ସାମିଲ ହୋଇଗଲା । ଏହିଭଳି ଭୟଙ୍କର ଶାରୀରିକ ପୀଡାଦାୟକ ତପସ୍ୟା ଏବଂ ତପସ୍ୱୀଙ୍କ କାହାଣୀରେ ପୁରାଣ ଶାସ୍ତ୍ର ଭରିରହିଛି । ଏଇଠି ଧ୍ୟାନ ଦେବା ଯୋଗ୍ୟ ତଥ୍ୟ ହେଉଛି - ବୈଦିକ ଯୁଗରେ ତଥାକଥିତ 'ତପ' ର ଅସ୍ତିତ୍ୱ ନଥିଲା ।

ଇନ୍ଦ୍ର, ସବିତା, ଅଗ୍ନି, ପବନ, ପର୍ଜନ୍ୟ (ମେଘ) ଭଳି ଅନେକ ପ୍ରାକୃତିକ ଶକ୍ତିର ଦେବତାମାନଙ୍କ ପରେ ବ୍ରହ୍ମା, ବିଷ୍ଣୁ, ଶିବ, କୁବେର, ଗଣେଶ, ହନୁମାନ, ରାମ, କୃଷ୍ଣ ଓ ବିଭିନ୍ନ ଅବତାରମାନଙ୍କ ସହିତ ତେତିଶ କୋଟି ଦେବୀଦେବତା ସୃଷ୍ଟି ହୋଇଗଲେ । କିନ୍ତୁ ଏହି ନୂତନ

ପୌରାଣିକ ଦେବତାମାନେ ପ୍ରାଚୀନ ବୈଦିକ ଦେବତାମାନଙ୍କୁ ବିସ୍ଥାପିତ କରି ପାରିଲେନାହିଁ ବରଂ ଦୁଇ ପ୍ରକାରର ଦେବତା ସହାବସ୍ଥାନ କରିରହିଲେ ।

ଭାରତରେ ଯଦିଓ ବୌଦ୍ଧ ମତବାଦ ପ୍ରାୟ ଏକ ହଜାର ବର୍ଷ ପର୍ଯ୍ୟନ୍ତ ପ୍ରଭାବ ବିସ୍ତାର କରି ରହିଥିଲା ତଥାପି ଏହି ନୂତନ ଧାର୍ମିକ ମତବାଦ ଭାରତୀୟ ଜନତାଙ୍କ ଜୀବନର ପ୍ରତ୍ୟେକ ଅବସ୍ଥାକୁ ପ୍ରଭାବିତ କରିପାରିଲା ନାହିଁ । ସେମାନଙ୍କ ଦୈନିକ କର୍ମକାଣ୍ଡ, ବିବାହ ପଦ୍ଧତି, ଜାତିପ୍ରଥା, ଭଜନ, ପୂଜନ, ପର୍ବପର୍ବାଣି ଆଦିରେ ପରିବର୍ତ୍ତନ ଆସିଲା ନାହିଁ । ବୌଦ୍ଧ ମତବାଦ ଭାରତ ଭୂମିରେ ଚେର ଜମେଇ ପାରିଲାନାହିଁ ।

ତଥାକଥିତ ତନ୍ତ୍ରବାଦକୁ ବିରୋଧ କରୁଥିବା ବୌଦ୍ଧ ମତବାଦ, ଧିରେ ଧିରେ ତନ୍ତ୍ରବାଦକୁ ମଧ ନିଜର କରିନେଲା । ପଞ୍ଚମ ଶତାବ୍ଦୀରେ ଦେବତାଙ୍କ ମୂର୍ତ୍ତିକୁ ମନ୍ଦିରମାନଙ୍କରେ ସ୍ଥାପନ କରି ପୂଜା କରାଗଲା । ପୂଜା କରିବା ବିଧି - ମୂର୍ତ୍ତି ସହିତ 'ମଧ୍ୟଏସିଆ'ରୁ ଭାରତରେ ପ୍ରବେଶ କଲା । ଏହି ମୂର୍ତ୍ତିପୂଜା ପୂର୍ବର ସମସ୍ତ ଧାର୍ମିକ ବିଧି ଅପେକ୍ଷା ଅଧିକ ଲୋକ ପ୍ରିୟତା ହାସଲ କଲା । କିନ୍ତୁ ପ୍ରାଚୀନ ପ୍ରାକୃତିକ ଦେବତା, ଯଜ୍ଞ, ତନ୍ତ୍ରମନ୍ତ୍ର, ବୃକ୍ଷ ଓ ନାଗପୂଜା, ବ୍ରହ୍ମଜ୍ଞାନ, ଭକ୍ତିବାଦ, କର୍ମବାଦ, ଜ୍ଞାନବାଦ ଆଦି ପୂର୍ବଭଳି ଚାଲୁରହିଲା ।

ଇସଲାମର ପ୍ରଭାବରେ ପୁଣି ଥରେ, ଏକେଶ୍ୱରବାଡଦ ଏବଂ ନିରାକାର ଈଶ୍ୱରଙ୍କ ଉପାସନାର ଲହର ସାରା ଦେଶରେ ଉଠିଲା । କବୀର, ନାନକ, ଦାଦୁ ଦୟାଲ, ଆଦି ଧର୍ମଗୁରୁ ତଥାକଥିତ ଦେବୀ ଦେବତାଙ୍କ ମୂର୍ତ୍ତିକୁ ପୂଜା କରିବାପାଇଁ ବିରୋଧ ପ୍ରକଟ କଲେ । ସେମାନେ ବିଭିନ୍ନ ମତ ମତାନ୍ତରକୁ ସମାଲୋଚନା କଲେ । କର୍ମକାଣ୍ଡ ଓ ବ୍ରାହ୍ମଣବାଦକୁ ବିରୋଧ କଲେ । କିନ୍ତୁ ମଜା କଥା ହେଉଛି ଯେ, ସେମାନଙ୍କ ଧର୍ମ ସୁଧାର ଆନ୍ଦୋଳନର ପରିଣାମ ସ୍ୱରୂପ ପ୍ରାଚୀନ ମତ ମତାନ୍ତର ତ ସମାପ୍ତ ହେଲାନି ବରଂ ତା'ସହିତ କବୀରପନ୍ଥ, ନାନକପନ୍ଥ, ଦାଦୁପନ୍ଥ ଆଦି ଅନେକ ପନ୍ଥ ବୃଦ୍ଧି ପାଇଲା ।

ବ୍ରିଟିଶ କାଳରେ ପୁଣି ଥରେ ଧର୍ମସୁଧାର ଅଭିଯାନ ମୁଣ୍ଡ ଟେକିଲା । ଗୋଟିଏଉନ୍ନତ ସଂସ୍କୃତି ଏବଂ ବୈଜ୍ଞାନିକ ଦୃଷ୍ଟିକୋଣ ରଖୁଥିବା ବ୍ରିଟିଶ ସମାଜ ସହିତ ସମ୍ପର୍କ ସ୍ଥାପନ ହେବା ପରେ, ଭାରତୀୟ ବୁଦ୍ଧିଜୀବୀମାନଙ୍କର ପୁଣି ଥରେ ନିଦ୍ରା ଭଙ୍ଗ ହେଲା ।

ସ୍ୱାମୀ ଦୟାନନ୍ଦ ପୁରାଣ 'ସତ୍ୟାର୍ଥ ପ୍ରକାଶ' - ଅବତାରବାଦ, ମନ୍ଦିର ଏବଂ ମୂର୍ତ୍ତି ପୂଜନକୁ ଭିତିହୀନ ବିଶ୍ୱାସ ବୋଲି ଘୋଷଣା କଲା । ତାଙ୍କର ଆନ୍ଦୋଳନ ଦ୍ୱାରା ହିନ୍ଦୁ

ସମାଜରେ କେତେ ସୁଧାର ହେଲା ଜଣା ନାହିଁ କିନ୍ତୁ ପୂର୍ବ ପ୍ରଚଳିତ ସମସ୍ତ ମତ ଓ ପନ୍ଥ ସହିତ ଏକ ନୂଆ ଧାର୍ମିକ ସମାଜ ମଧ ସ୍ଥାନ ପାଇଲା 'ଆର୍ଯ୍ୟସମାଜ' ।

ରାଜା ରାମମୋହନ ରାୟଙ୍କ 'ବ୍ରହ୍ମସମାଜ'କୁ ମଧ ହିନ୍ଦୁସମାଜ ଗ୍ରହଣ କରିଛି । ସ୍ୱାମୀ ବିବେକାନନ୍ଦଙ୍କ ଉପନିଷଦ ପ୍ରେରିତ ବ୍ରହ୍ମବାଦ ବି ଗୋଟିଏ କ୍ଷୁଦ୍ର ଜନସଂଖ୍ୟାରେ ଲୀନ ହୋଇଗଲା । ମହାତ୍ମା ଗାନ୍ଧୀଙ୍କ ଜାତି ଓ ବର୍ଗ ବିହୀନ ପ୍ରବୃଦ୍ଧ ହିନ୍ଦୁଧର୍ମ ମଧ 'ଖାଦୀ ଆଶ୍ରମ' ଏବଂ 'ଗାନ୍ଧୀ ସ୍ମାରକ' ସଂସ୍ଥାମାନଙ୍କରେ ଆତ୍ମଗୋପନ କରିଛି । ଆଜି ବି ଏହି ବିଶାଳ ହିନ୍ଦୁ ସମାଜ, ନିଜର ଅପରିବର୍ତ୍ତିତ ଗୌରବକୁ ନେଇ, ସମସ୍ତ ପ୍ରାଚୀନ ପରମ୍ପରା ସହିତ ବିରାଜମାନ ଅଛି ଏବଂ ଗର୍ବର ସହିତ ଆମର ସ୍ଥାଣୁ ସ୍ଥିତିର ଗୁଣଗାନ କରୁଛି ।

ଆମେ ଅପେକ୍ଷା କରିଛୁ ସେହି ଦିନକୁ, ଯେଉଁ ଦିନ ସତରେ ଧର୍ମ ସୁଧାର ହୋଇପାରିବ ଏବଂ ପ୍ରତ୍ୟେକ ଭାରତୀୟ ମୁକ୍ତ କଣ୍ଠରେ କହିବ – "ଆମେ ପ୍ରାଚୀନ ରୂଢ଼ିବାଦୀ ପରମ୍ପରା ଓ କୁସଂସ୍କୃତିର ବନ୍ଧନ କାଟିଦେଇ ଆଜିର ସୁଖଦ ସଂସାରକୁ ଉପଭୋଗ କରୁଛୁ । କାଲି ହୁଏତ ଆମର ବଂଶଧରମାନେ ଚନ୍ଦ୍ର କିମ୍ବା ମଙ୍ଗଳ ଗ୍ରହରେ ଯେଉଁ ଅବସ୍ଥାନ କରିବେ ।

********

## ଈଶ୍ୱର ଅଛନ୍ତିକି ?

ଆସ୍ତିକମାନେ ଏହି ପ୍ରଶ୍ନର ଅନେକ ପ୍ରକାରେ ଉତ୍ତର ଦେଉଛନ୍ତି । ଯଥା : ଈଶ୍ୱର ଏହି ସଂସାରକୁ ସୃଷ୍ଟି କରିଛନ୍ତି, ସେ ହେଉଛନ୍ତି ସତ୍ୟ, ଶିବ ଓ ସୁନ୍ଦର । ଏହି ସବୁ ଉତ୍ତର ଗୁଡ଼ିକୁ ଯେତେବେଳେ ଜ୍ଞାନର କଷଟିରେ ଘଷି ମାଜି ପରୀକ୍ଷା କରାଯାଏ, ସେତେବେଳେ ଜଣା ପଡ଼େ ଯେ ସବୁଗୁଡ଼ିକ କେବଳ କାଳ୍ପନିକ ତଥ୍ୟ । ତାଙ୍କୁ ଯଦି ପ୍ରଶ୍ନ କରାଯାଏ - ଈଶ୍ୱରଙ୍କୁ କିଏ ସୃଷ୍ଟି କରିଛି? ସେ ଯଦି ସତ୍ୟ, ଶିବ, ସୁନ୍ଦର, ତେବେ ତାଙ୍କ ଦ୍ୱାରା ସୃଷ୍ଟି ହୋଇଥିବା କେତେକ ପ୍ରାଣୀ ଅସତ୍ୟ, ଅଶିବ ଓ ଅସୁନ୍ଦର କାହିଁକି? ସାରା ବିଶ୍ୱ ସତ୍ୟ, ଶିବ ଓ ସୁନ୍ଦର ନୁହେଁ କାହିଁକି? ଏହା ପଚାରିଲେ ସେମାନେ କୁହନ୍ତି - ତୁମେ ନାସ୍ତିକ ତେଣୁ ଏହାର ରହସ୍ୟ ବୁଝି ପାରିବ ନାହିଁ । ଅର୍ଥାତ ସେମାନେ ବି ଏହାର ଉତ୍ତର ଜାଣିନାହାନ୍ତି ବୋଲି ମାନିବାକୁ ନାରାଜ । ଯିଏ କାରଣକୁ ନବୁଝି, ବ୍ୟବହାର କରିବା ତ୍ୟାଗ କରି ସାରିଛି, ତାହା ସହିତ ଯୁକ୍ତି କରିବା ଅର୍ଥ ଜଣେ ମୃତ ବ୍ୟକ୍ତି ପାଇଁ ଔଷଧ ନିଦାନ କରିବା ।

# ବ୍ରାହ୍ମଣ ମତବାଦ ଏବଂ ହିନ୍ଦୁ ସମାଜ

ସର୍ବପ୍ରଥମେ ପାଠକମାନଙ୍କ ଭ୍ରମ ଦୂର କରିବାପାଇଁ ଆମେ ସ୍ପଷ୍ଟ କରିଦେବାକୁ ଚାହୁଁଛୁ - ଏଠାରେ ବ୍ରାହ୍ମଣ ଶବ୍ଦର ଅର୍ଥ ବ୍ରାହ୍ମଣ ଜାତିରେ ଜନ୍ମ ଗ୍ରହଣ କରିଥିବା କୌଣସି ବ୍ୟକ୍ତି ନୁହେଁ । ଏଠାରେ ବ୍ରାହ୍ମଣ ଶବ୍ଦର ଅର୍ଥ ହେଉଛି - ଗୋଟିଏ ବିଶେଷ ବର୍ଗ, ଯେଉଁ ବର୍ଗର ବ୍ୟକ୍ତି, ତଥାକଥିତ ଈଶ୍ୱର ଏବଂ ଧର୍ମ ନାମରେ ଲୋକମାନଙ୍କ ମନରେ ଭୟ ସୃଷ୍ଟି କରେ, ସମାଜ ଉପରେ ନିଜର ପ୍ରଭୁତ୍ୱ ବଜାୟ ରଖିବାପାଇଁ, କପଟ ଆଚରଣ କରିଥାଏ, ସେମାନଙ୍କୁ ସାଧାରଣତଃ ମୌଳବାଦୀ ମଧ କୁହାଯାଏ ।

ଏହି ବର୍ଗର ଲୋକମାନଙ୍କ ଭିତରେ ମଧ ପରସ୍ପର ସଂଘର୍ଷ ହୋଇ ଆସିଛି । ବୈଦିକ କାଳରେ ଯେଉଁ ବ୍ରାହ୍ମଣବର୍ଗ ପ୍ରଭାବଶାଳୀ ଥିଲେ, ଜୈନ ଓ ବୌଦ୍ଧ ମତବାଦର ଲୋକାଦୃତ କାଳରେ ସେମାନଙ୍କୁ ଭୀଷଣ ବିରୋଧ କରାଯାଇଥିଲା । ଜନମତ ଦ୍ୱାରା ବୈଦିକ ବ୍ରାହ୍ମଣବର୍ଗକୁ ପରାଜିତ କରି, ଯେଉଁ ନୂତନବର୍ଗର ଉଦୟ ହେଲା, ସେମାନେ ହେଲେ ଜୈନମୁନି, ଶ୍ରମଣ ଅବା ବୌଦ୍ଧଭିକ୍ଷୁ । ସେମାନେ ପରମ୍ପରାଗତ ବ୍ରାହ୍ମଣବର୍ଗକୁ କଟୁ ସମାଲୋଚନା କଲେ । ଲୋକାୟତ ସମ୍ପ୍ରଦାୟ ଚାର୍ବାକଙ୍କ ସମର୍ଥକମାନେ "ତ୍ରୟୋ ବେଦସ୍ୟ କର୍ତାରା : ଡର୍ପାର : ଧୂର୍ତ, ଭଣ୍ଡ, ନିଶାଚର" ଅର୍ଥାତ ବେଦକୁ ରଚନା କରିଥିବା ଲୋକମାନେ ଧୂର୍ତ, ଭଣ୍ଡ ଓ ନିଶାଚର କହି ନିନ୍ଦା କରୁଥିଲେ ।

କିଛିବର୍ଷ ଆଧ୍ୟାତ୍ମିକ ମତବାଦ ଗୁଡ଼ିକର ସଂଘର୍ଷ ପରେ, ଦ୍ୱିତୀୟ ପର୍ଯ୍ୟାୟରେ ପରମ୍ପରାବାଦୀ ବ୍ରାହ୍ମଣଙ୍କ, ପ୍ରଭୁତ୍ୱ ପୁନଃ ପ୍ରତିଷ୍ଠା ହେଲା । ସେମାନେ ନୂଆ ବ୍ରାହ୍ମଣଙ୍କ ଦ୍ୱାରା ଆଧ୍ୟାତ୍ମିକତାକୁ ନୂତନ ଭାବେ ବ୍ୟାଖ୍ୟା କରିଥିବା ଯୋଗୁଁ, ସେମାନଙ୍କୁ ସମ୍ପୂର୍ଣ୍ଣ ଭାବେ ତ୍ୟାଜ୍ୟ କରିଥିଲେ । କୁମାରିଲ ଭଟ୍ଟ, ବୌଦ୍ଧ ମତକୁ କୁକୁର ଛାଇରେ ରଖା ଯାଇଥିବା ଗାଈକ୍ଷୀର ସହ ତୁଳନା କରି କହିଲେ - "ଏଭଳି କ୍ଷୀର ଅମେଧ ତଥା କୌଣସି ଯଜ୍ଞ କର୍ମପାଇଁ ଅନୁପଯୁକ୍ତ ।" ବୈଦିକ ବ୍ରାହ୍ମଣମାନେ ମୃତ୍ୟୁ ବରଣ କରୁଥିବା ବୌଦ୍ଧ ଭିକ୍ଷୁମାନଙ୍କ ପାଟିରେ, ପାଣି ଟୋପାଏ ଦେଲେ ବି ମହାପାପ ହେବ ବୋଲି ଘୋଷଣା କରିଦେଲେ ।

ବୌଦ୍ଧ ଭିକ୍ଷୁମାନେ ବୈଦିକ ପୂଜାକୁ ଭିତ୍ତିହୀନ କର୍ମକାଣ୍ଡ କହି ବର୍ଜନ କଲେ ଏବଂ ବୈଦିକ ବିଦ୍ୱାନମାନେ ବୌଦ୍ଧ ଉପାସନାକୁ ନାସ୍ତିକ କର୍ମ କହି ସମାଲୋଚନା କଲେ । ଜୈନ

କିମ୍ବା ବୌଦ୍ଧ ମତବାଦ ହେଉ ରହସ୍ୟବାଦ, ବ୍ୟଭିଚାର, ପରଲୋକ, ପୁନର୍ଜନ୍ମ ଆଦି ଅବଧାରଣା ପ୍ରାୟ ପ୍ରତ୍ୟେକ ଧର୍ମରେ ରହିଛି । ଏଇଠି ଆମେ ସୁଧୀ ପାଠକମାନଙ୍କ ଅବଗତି ନିମନ୍ତେ ବିନୀତ ଭାବେ ଜଣାଇ ଦେବାକୁ ଚାହୁଁଛୁ ଯେ, ଧର୍ମର ଆଲୋଚନା କରିବା ଅର୍ଥ ସମାଜର ବିରୋଧ କରିବା ନୁହେଁ । ଭାରତର ବର୍ତ୍ତମାନର ହିନ୍ଦୁ ମତବାଦ ଭଳି, ଗୋଟିଏ ସ୍ୱତନ୍ତ୍ର ମତବାଦ କବେ ବି ନଥିଲା । ବୈଦିକ, ଔପନିଷଦିୟ, ଜୈନ, ବୌଦ୍ଧ, ଲୋକାୟତ, ଭାଗବତ, ବୈଷ୍ଣବ, ଶୈବ, ଶାକ୍ତ ଆଦି ଅନେକ ପ୍ରକାର ମତବାଦ ଭାରତରେ ବିଭିନ୍ନ ସମୟରେ ସୃଷ୍ଟି ହୋଇଛି । ଏହି ସମସ୍ତ ମତବାଦକୁ ଏକତ୍ର କରି ଆମେ ହିନ୍ଦୁଧର୍ମ ବୋଲି କହିଲେ ହୁଏତ ଭୁଲ ହେବ । କାରଣ ଉପରୋକ୍ତ ସମସ୍ତ ମତବାଦ ପରସ୍ପର ବିରୋଧୀ ମତ ପ୍ରକଟ କରୁଛନ୍ତି । କାହାରି ମତ କାହା ସହିତ ମେଳ ଖାଉନାହିଁ ।

ବୈଦିକ, ଔପନିଷଦିୟ, ବୈଷ୍ଣବ, ଶୈବ, ଶାକ୍ତ ଆଦି ଧାର୍ମିକ ସମ୍ପ୍ରଦାୟ, ବେଦକୁ ପ୍ରମାଣିତ ତଥା ଅପୌରଷେୟ ବୋଲି ମାନୁଛନ୍ତି । କିନ୍ତୁ ବୌଦ୍ଧ ଓ ଜୈନମାନଙ୍କ ମତରେ ବେଦର ମହତ୍ତ୍ୱ ଯେ କୌଣସି ସାଧାରଣ ସାହିତ୍ୟ ପୁସ୍ତକରୁ ବେଶୀ ନୁହେଁ ।

ପରସ୍ପର ବିରୋଧୀ ମତ ରଖୁଥିବା ମତବାଦମାନଙ୍କୁ ଏକତ୍ର କରି ଏବଂ କୌଣସି ଧର୍ମ ଗ୍ରନ୍ଥରେ ଉଲ୍ଲେଖ ନଥିବା, ମତବାଦର ନାମ ହିନ୍ଦୁ ମତବାଦ ବୋଲି କହିବା ଠିକ ହେବନାହିଁ । ହିନ୍ଦୁ ଶବ୍ଦ କୌଣସି ପ୍ରାଚୀନ ଧର୍ମ ଗ୍ରନ୍ଥରେ ଉଲ୍ଲେଖ ନାହିଁ । ଏହା ଏକ ସଂସ୍କୃତ ଶବ୍ଦ ନୁହେଁ ବୋଲି ସ୍ୱାମୀ ଦୟାନନ୍ଦ କହିଛନ୍ତି । ଐତିହାସିକ ତଥ୍ୟ ଅନୁସାରେ ଗତ 1030 ମସିହାରେ, ଯେତେବେଳେ ମହମ୍ମଦ ଗଜନୀ ଭାରତକୁ ଆସିଥିଲା, ତା' ସହିତ ପାର୍ଶି ଐତିହାସିକ "ଆଇବେରୁଣୀ" ମଧ୍ୟ ଆସିଥିଲା । ସେ ସମୟର ଭାରତୀୟ ଲୋକମାନଙ୍କର ଦେହର କଳାରଙ୍ଗ, ସେମାନଙ୍କର ରହଣୀ ଶୈଳୀ ଓ ଜାତିପ୍ରଥା ଯୋଗୁଁ ନୀଚଜାତି ପ୍ରତି ହେଉଥିବା ଅସଭ୍ୟ ବ୍ୟବହାର ଦେଖି 'ଆଇବେରୁଣୀ' ସେମାନଙ୍କୁ ପ୍ରଥମେ ହିନ୍ଦୁ ଲୋକ ବୋଲି ସମ୍ବୋଧନ କରିଥିଲା । ହିନ୍ଦୁ ଶବ୍ଦ ପାର୍ଶି ଭାଷାକୋଷ "ଗୟାଶୂଲସୌଗତ"ରୁ ଆସିଛି । ଯାହାର ଶାବ୍ଦିକ ଅର୍ଥ ହେଉଛି - "କାଳା ଚୋର, ଡାକୁ, ରାହାଯାନ, ଗୋଲାମ, କାଫେର ଓ ଅସଭ୍ୟ ।" ହିନ୍ଦୁ ଶବ୍ଦର ଅର୍ଥ ଆରବୀ ଓ ଉର୍ଦ୍ଦୁ ଭାଷାକୋଷରେ ମଧ୍ୟ ଏକା ଭଳି ଲେଖା ଯାଇଛି ।

ହିନ୍ଦୁ ଶବ୍ଦ ସମ୍ପର୍କରେ ଯାହା ବି ତଥ୍ୟ ଉପଲବ୍ଧ ଅଛି, ସେଥିରେ ହିନ୍ଦୁ ଶବ୍ଦର କୌଣସି ଧର୍ମ ସମ୍ପ୍ରଦାୟ ସହିତ ସମ୍ପର୍କ ଥିବାର ପ୍ରମାଣ ମିଳୁନାହିଁ । ହିନ୍ଦୁ ଏକ ଜାତୀୟତା କିମ୍ବା

ରାଷ୍ଟ୍ରୀୟତା ବୋଧକ ସମ୍ବୋଧନ ହୋଇପାରେ । ସେହି ଅର୍ଥରେ ଆମେ କହିପାରିବା – "ଭାରତ ଭୂମିରେ ବର୍ତ୍ତମାନ ସୁଦ୍ଧା ବାସ କରୁଥିବା ସମସ୍ତ ମାନବ ଯଦି ନିଜର ମାତୃଭୂମି ବୋଲି ମନେ କରନ୍ତି ଏବଂ ପରସ୍ପର ପ୍ରତି ଭାତୃ ଭାବ ଅନୁଭବ କରୁଛନ୍ତି, ତେବେ ସେମାନେ ସମସ୍ତେ ହିନ୍ଦୁ । ସେହିମାନଙ୍କ ସମାଜ ଏକ ହିନ୍ଦୁ ସମାଜ ।

ହିନ୍ଦୁସମାଜରେ ଯଦିଓ ବୈଦିକ, ଔପନିଷଦିୟ, ବୌଦ୍ଧ, ଜୈନ, ଭାଗବତ, ଶିଖ, ବୈଷ୍ଣବ, ଶୈବ, ଶାକ୍ତ ଆଦି ଅନେକ ଧାର୍ମିକ ବିଶ୍ୱାସ ପ୍ରଚଳିତ ଅଛି, ତଥାପି ଆମେ ସମସ୍ତ ଧର୍ମକୁ ମିଶାଇ ହିନ୍ଦୁ ମତବାଦ ବୋଲି କହିବା ଉଚିତ ହେବନାହିଁ ।

ଧର୍ମ ପାଇଁ ଯଦି କୌଣସି ବିଶ୍ଳେଷଣ ଶବ୍ଦ ବ୍ୟବହାର କରାଯିବ, ତେବେ 'ବ୍ରାହ୍ମଣ ଧର୍ମ' କହିବା ବେଶୀ ତର୍କସଙ୍ଗତ ହେବ । କାରଣ ଧର୍ମର ନିୟମ ପ୍ରଣୟନ କେବଳ ବ୍ରାହ୍ମଣମାନେ ହିଁ କରିଥାନ୍ତି ।

ଧର୍ମ ଗ୍ରନ୍ଥମାନଙ୍କରେ ବ୍ରାହ୍ମଣମାନଙ୍କର କର୍ତ୍ତବ୍ୟ ହେଉଛି - "ଆଧ୍ୟାତ୍ମିକ କର୍ମ କାଣ୍ଡ କରିବା, ଧର୍ମ ସମ୍ପର୍କୀୟ ବିବାଦ ବା ସମସ୍ୟାର ସମାଧାନ କରିବା, ଧର୍ମକୁ ଅନ୍ୟ ବିରୋଧୀମାନଙ୍କ ଠାରୁ ରକ୍ଷା କରିବା ।

ମନୁସ୍ମୃତିରେ ବ୍ରାହ୍ମଣଙ୍କ କର୍ତ୍ତବ୍ୟ ସମ୍ପର୍କରେ ସ୍ପଷ୍ଟ ନିର୍ଦ୍ଦେଶ ଅଛି -

"ଅଧ୍ୟାପନ ମଧ୍ୟୟନଂ ଯଜନଂ ଯାଜନଂ ତଥା
ଦାନ ପ୍ରତି ଗ୍ରହଂ ଚୈବ ବ୍ରାହ୍ମଣାମ କଳ୍ପାୟତ"

ଅର୍ଥାତ "ବେଦ ଅଧ୍ୟୟନ ଏବଂ ଅଧ୍ୟାପନ, ଧାର୍ମିକ ଅନୁଷ୍ଠାନ, କର୍ମକାଣ୍ଡ, ଯଜ୍ଞ ଆଦି କରିବା ଓ କରାଇବା, ଦାନ ଏବଂ ପ୍ରତିଗ୍ରହ ଗ୍ରହଣ କରିବା ହେଉଛି ବ୍ରାହ୍ମଣଙ୍କ ମୁଖ୍ୟକାମ"।

ଏହିସମସ୍ତ କର୍ମ ସହିତ ବ୍ରାହ୍ମଣମାନେ ସମାଜରେ ନିଜକୁ ଶ୍ରେଷ୍ଠ ମାନବ ରୂପେ ପ୍ରତିଷ୍ଠିତ କରି ପାରିଥିଲେ । ମନୁଙ୍କ ମତରେ "ବ୍ରାହ୍ମଣ ଜନ୍ମରୁ ହିଁ ପୃଥିବୀର ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଶ୍ରେଷ୍ଠ ଜୀବ । ଏହି ଜଗତର ସମସ୍ତ ସମ୍ପତ୍ତି, ବ୍ରାହ୍ମଣଙ୍କ ସମ୍ପତ୍ତି । ବ୍ରାହ୍ମଣ ଯଦି କାହାଠାରୁ ଅନ୍ନ, ବସ୍ତ୍ର ଓ ଧନ ନେଇ ବ୍ୟବହାର କରନ୍ତି, ତେବେ ଏହା ତାଙ୍କର ଅଧିକାର । ଅନ୍ୟମାନେ ଯେଉଁ ଧନ ବ୍ୟବହାର କରୁଛନ୍ତି, ତାହା ବ୍ରାହ୍ମଣଙ୍କ ଦୟାରୁ ପ୍ରାପ୍ତ କରିଥାନ୍ତି ।"

ମଣିଷ ସମାଜରେ ରାଜସତ୍ତା ସୃଷ୍ଟି ହେବା ପୂର୍ବରୁ, ବ୍ରାହ୍ମଣମାନେ ନିଜର ସ୍ଥାନ ଉଚ୍ଚରେ ସ୍ଥାପନ କରି ସାରିଥିଲେ । ପ୍ରକୃତିର ବିଭିନ୍ନ ରୂପକୁ ରହସ୍ୟମୟ ଢଙ୍ଗରେ ବ୍ୟାଖ୍ୟା

କରି, ଜନତାଙ୍କ ଅଲକ୍ଷରେ, ଏକ ତଥାକଥିତ ଅଲୌକିକ ଶକ୍ତିର ଅସ୍ତିତ୍ୱକୁ ସୃଷ୍ଟି କଲେ । ଏହି କାଳ୍ପନିକ ସତାର ନାମ ହେଲା - 'ଈଶ୍ୱର' 'God' ବା 'ଆଲ୍ଲା' । ଏହି ସତା ଓ ତାଙ୍କ ଦ୍ୱାରା ତିଆରି ନୀତି ନିୟମଗୁଡ଼ିକୁ, ଅତି ଚତୁରତାର ସହିତ ଜନମାନସକୁ ପ୍ରଭାବିତ କଲାଭଳି ଭାଷାରେ ପ୍ରଚାରକଲେ । ବୈଜ୍ଞାନିକ ଦୃଷ୍ଟିକୋଣର ଅଭାବ ଯୋଗୁଁ ତଥାକଥିତ ଈଶ୍ୱର ଓ ଧର୍ମ, ପ୍ରତ୍ୟେକଯୁଗରେ ଜନମାନସକୁ ପ୍ରଭାବିତକରି ରଖିପାରିଲା ।

ଆଉ ଗୋଟିଏ କଥା ଦେଖିବାକୁ ମିଳୁଛି କି ତଥାକଥିତ ଈଶ୍ୱର ଓ ଧର୍ମର ବ୍ୟାଖ୍ୟା ବିଭିନ୍ନ ସମୟରେ ପରିବର୍ତ୍ତନ ହୋଇଛି । ସବୁ ସ୍ଥାନରେ ତଥାକଥିତ ଗ୍ରାମ୍ୟ ଦେବୀ ଦେବତା, ଘରର ଇଷ୍ଟ ଦେବତା, ତନ୍ତ୍ରମନ୍ତ୍ର, ଯାଦୁବିଦ୍ୟା, ଅବତାରବାଦ, ବ୍ରହ୍ମ ଓ ଈଶ୍ୱର ସମ୍ପର୍କରେ ଥିବା ଅବଧାରଣା ଏକାଭଳି ନୁହେଁ । ମଣିଷର ବୌଦ୍ଧିକ ବିକାଶ ହେବା ସହିତ ଅନେକ ପ୍ରାଚୀନ ଧାରଣା ଲୁପ୍ତ ହୋଇ ନୂତନ ଧାରଣା ଉତ୍ପନ୍ନ ହୋଇ ସାରିଲାଣି । ଯେଉଁଠି ପ୍ରାଚୀନ ଧାରଣାରେ ସନ୍ଦେହ ସୃଷ୍ଟି ହେଉଛି, ସେଇଠି ପୂର୍ବୋକ୍ତ ଧାରଣାରେ ସଂଶୋଧନ କରି ଦିଆଯାଉଛି ।

ମଜା କଥା ହେଉଛି - ନୂଆ କରି ସଂଶୋଧନ ହୋଇଥିବା ଧାରଣାକୁ ବି କେହି ବିରୋଧ ନକରି ସହଜରେ ଗ୍ରହଣ କରି ନେଉଛନ୍ତି । କାରଣ ନୂତନ ସଂଶୋଧିତ ନିୟମ ସେମାନଙ୍କ ସୁବିଧା ଦୃଷ୍ଟିରୁ ଠିକ ଲାଗୁଛି । ଦ୍ୱିତୀୟତଃ ଏହି ସଂଶୋଧନ କେବଳ ବ୍ରାହ୍ମଣମାନଙ୍କ ଦ୍ୱାରା ହିଁ ହୋଇଥାଏ । ଏହାକୁ ଯଦି କୌଣସି ବୁଦ୍ଧିଜୀବୀ ବିରୋଧ କରନ୍ତି, ତେବେ ରାଜସତା ସାହାଯ୍ୟରେ ତାହା ତୁରନ୍ତ ଦମନ କରି ଦିଆଯାଏ । ରାଜାସତା ମଧ୍ୟ ବ୍ରାହ୍ମଣମାନଙ୍କୁ ହିଁ ସମର୍ଥନ କରିଥାଏ । କାରଣ ଅଲୌକିକ ସତାର ଏକମାତ୍ର ବ୍ୟାଖ୍ୟାକାର ଏବଂ ତଥାକଥିତ ଈଶ୍ୱରଙ୍କ ପ୍ରତିନିଧି ରୂପେ ଏହିବର୍ଗ ବହୁସଂଖ୍ୟକ ଲୋକମାନଙ୍କୁ ନିଜ ଇଚ୍ଛା ଅନୁସାରେ ପରିଚାଳିତ କରିପାରେ ।

ସେ ଯୁଗରେ ରାଜାମାନେ କିମ୍ବା ଆଜିର ନେତାମାନେ ମଧ୍ୟ ମାନସିକ ଭାବେ ଧର୍ମଗୁରୁଙ୍କ ଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ । ରାଜାମାନଙ୍କର ଶକ୍ତି ଓ ଶାସନ କ୍ଷମତା ବଜାୟ ରଖିବା ପାଇଁ ବ୍ରାହ୍ମଣବର୍ଗ ଯଜ୍ଞ, ବଳି ଓ ଅନ୍ୟାନ୍ୟ କର୍ମକାଣ୍ଡ କରାଇଥାନ୍ତି । ଦେବତାମାନଙ୍କ ଆଶୀର୍ବାଦ ପ୍ରାପ୍ତ କରିବା ପାଇଁ କରାଯାଉଥିବା ପୂଜା, ଅର୍ଚ୍ଚନା କେବଳ ବ୍ରାହ୍ମଣ ବା ପୁରୋହିତମାନେ ହିଁ କରୁଥିଲେ ଏବଂ ଆଜି ବି କରୁଛନ୍ତି । ସେଥିପାଇଁ ବ୍ରାହ୍ମଣ, ପୁରୋହିତ ଓ ଧର୍ମଗୁରୁଙ୍କ ନିର୍ଦ୍ଦେଶକ୍ରମେ ସାମ୍ରାଜ୍ୟମାନଙ୍କର ଉତ୍ଥାନ ବା ପତନ ହେଉଥିଲା । ପ୍ରତ୍ୟେକ ରାଜା

ଏହି ବର୍ଗର ଇଚ୍ଛା ବଳରେ ହିଁ ସମ୍ମାନ ଓ ପ୍ରତିଷ୍ଠା ଲାଭ କରି ପାରୁଥିଲେ । ତେଣୁ ପରୋକ୍ଷ ଭାବେ ବ୍ରାହ୍ମଣମାନେ ମଧ୍ୟ ସମାଜର ନୀତି ନିର୍ଦ୍ଧାରକ ବନିଗଲେ ।

ଇତିହାସ ପୃଷ୍ଠାରେ ମାତ୍ର କେତୋଟି ରାଜା ବ୍ରାହ୍ମଣମାନଙ୍କ ପ୍ରଭୁତ୍ୱକୁ, ଅସ୍ୱୀକାର କରିଥିବା ଉଦାହରଣ ମିଳୁଛି । ରାଜା ଅଶୋକ ଏବଂ କନିଷ୍କ ପରମ୍ପରାଗତ ବ୍ରାହ୍ମଣବାଦକୁ ଅସ୍ୱୀକାର କରିବାପାଇଁ, ନୂତନ ପିଢ଼ିର ବ୍ରାହ୍ମଣମାନଙ୍କ ସାହାଯ୍ୟ ନେଇଥିଲେ । ଅଶୋକଙ୍କ ପୂର୍ବରୁ ହିଁ ନୂତନ ପିଢ଼ିର ବ୍ରାହ୍ମଣଙ୍କ ସୃଷ୍ଟି ହୋଇ ସାରିଥିଲା । ଅଶୋକ ଏହି ନୂତନ ବ୍ରାହ୍ମଣମାନଙ୍କୁ ମାନ୍ୟତା ଦେବାର ଅସଲ କାରଣ ହେଉଛି - ପରମ୍ପରାବାଦୀ ବ୍ରାହ୍ମଣ ତାଙ୍କୁ କ୍ଷତ୍ରୀୟ ରାଜା ବୋଲି ସ୍ୱୀକାର କରୁନଥିଲେ । ଅଶୋକ, ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ବଂଶଧର ଥିଲେ ଏବଂ ମୌର୍ଯ୍ୟବଂଶ କ୍ଷତ୍ରୀୟ ନଥିଲେ । ଏହି ବଂଶର ପରମ୍ପରା 'ମୁରା' ନାମକ ଏକ ଦାସୀ ସହିତ ଯୋଡି ହୋଇଛି । ଜୈନଧର୍ମ ଅନୁସାରେ ଚନ୍ଦ୍ରଗୁପ୍ତ, ଜୈନ ମତବାଦକୁ ସ୍ୱୀକାର କରିଥିଲେ । ଅଶୋକ ମଧ୍ୟ ବୈଦିକ ବ୍ରାହ୍ମଣମାନଙ୍କ ଉପେକ୍ଷାର ଶିକାର ହୋଇ, ବୌଦ୍ଧ ମତବାଦର ନୂତନ ବ୍ରାହ୍ମଣ ବର୍ଗର ସାହାଯ୍ୟ ନେଇଥିଲେ । କାରଣ ରାଜା ଶକ୍ତି, ଅପେକ୍ଷା ଧାର୍ମିକ ସତାର ପ୍ରଭାବ, ଲୋକମାନଙ୍କ ମନ ଓ ମସ୍ତିଷ୍କକୁ ବେଶୀ ପ୍ରଭାବିତ କରିଥାଏ । ରାଜଶକ୍ତି ବାହୁବଳ ପ୍ରୟୋଗ କରି, ଲୋକମାନଙ୍କୁ ନିଜର ଗୋଲାମ ବନେଇପାରେ କିନ୍ତୁ ହଜାର ହଜାର ବର୍ଷ ଧରି ଧାର୍ମିକସତା ଲୋକମାନଙ୍କୁ ମାନସିକ ସ୍ତରରେ ଗୋଲାମ ବନେଇ ରଖିବାରେ ସଫଳ ହୋଇପାରିଛି ।

ବଳପୂର୍ବକ ବନେଇଥିବା ଗୋଲାମ ଅପେକ୍ଷା, ମାନସିକ ଦାସତା, ଅତି ଗଭୀର ଓ ଭୟଙ୍କର ହୋଇଥାଏ । ଏହି କାରଣରୁ ସାଧାରଣତଃ ଲୋକମାନେ, ରାଜସତାର ସମାଲୋଚନାକୁ ସହ୍ୟ କରି ପାରନ୍ତି କିନ୍ତୁ ଧର୍ମର ସମାଲୋଚନାକୁ ଆଦୌ ସହ୍ୟ କରିପାରନ୍ତି ନାହିଁ । ଧର୍ମର ସମାଲୋଚନାକୁ ଧାର୍ମିକ ଲୋକମାନେ ନିଜର ବ୍ୟକ୍ତିତ୍ୱ ଉପରେ ଆକ୍ରମଣ ହେଉଛି ବୋଲି ଭାବିଥାନ୍ତି ।

ଆଧ୍ୟାତ୍ମିକ ଧର୍ମ ହିଁ ସମାଜର ପ୍ରାଣ ବୋଲି ବ୍ରାହ୍ମଣଙ୍କ ଦ୍ୱାରା ଆଦିମ କାଳରୁ ବିଭିନ୍ନ ସ୍ତରରେ ପ୍ରଚାର କରା ଯାଉଥିବାରୁ ଜନମାନସରେ, ଏହାର ଗଭୀର ପ୍ରଭାବ ରହିଛି । ଧର୍ମକୁ ଅବଜ୍ଞା କଲେ କିମ୍ବା ବ୍ରାହ୍ମଣମାନଙ୍କ ସତାକୁ ଅସ୍ୱୀକାର କଲେ, ପରିବାର ନଷ୍ଟ ହୋଇଯିବ, ଅପରାଧ ବୃଦ୍ଧି ପାଇବ, ସମାଜରେ ଅବ୍ୟବସ୍ଥା ଦେଖାଯିବ, ଏପରିକି ମୃତ୍ୟୁ ପରେ ବି ମୋକ୍ଷ

ପ୍ରାପ୍ତ ହେବନାହିଁ, ଭଳି ଅନେକ କାଳ୍ପନିକ ଓ ଅବାନ୍ତର ଭୟ ଦେଖାଇ ଜନମାନସକୁ ପ୍ରଭାବିତ କରା ଯାଇଛି । ଜନମାନସ ଅଗତ୍ୟା ଆଧ୍ୟାତ୍ମିକ ଧର୍ମକୁ ନିଜର ଶ୍ୱାସ ପ୍ରଶ୍ୱାସ ଭଳି, ଏକ ଅପରିହାର୍ଯ୍ୟ ବସ୍ତୁ ରୂପେ ଗ୍ରହଣ କରି ନେଇଛି ।

ବୌଦ୍ଧିକ ସମାଜ, ଆଧ୍ୟାତ୍ମିକବାଦ ଏକ ମାନସିକ ରୋଗ ବୋଲି କହନ୍ତି । କାରଣ ଧାର୍ମିକ ବ୍ୟକ୍ତି ବାସ୍ତବ ଜଗତକୁ ମିଥ୍ୟା ଓ ମାୟା ଏବଂ କାଳ୍ପନିକ ଆଧ୍ୟାତ୍ମିକ ଜଗତକୁ ସତ୍ୟ ବୋଲି ମାନିଥାଏ । ଏହି ଭିତ୍ତିହୀନ ବିଶ୍ୱାସକୁ ବ୍ୟକ୍ତି ଭିତରେ ସର୍ବଦା ସତେଜ ରଖିବା ପାଇଁ, ନିଜର ବ୍ୟବସାୟିକ ଲାଭ ଦେଖୁଥିବା ବର୍ଗ, ଧର୍ମର ସମାଲୋଚନାକୁ ତୀବ୍ର ବିରୋଧ କରନ୍ତି । ସେମାନଙ୍କର ଭୟ ଥାଏ - ମାନସିକ ରୋଗୀର ବିଶ୍ୱାସ ଯଦି ଓଲଟା ହୋଇଯାଏ ଅର୍ଥାତ ତଥାକଥିତ ସ୍ୱର୍ଗକୁ ମିଥ୍ୟା ଓ ପୃଥିବୀକୁ ସତ ବୋଲି ଭାବିବ, ତେବେ ସେମାନଙ୍କର ଦୋକାନ ବନ୍ଦ ହୋଇଯିବ ।

ସଚେତନ ଜନତା ବୁଝିବା ଆବଶ୍ୟକ ଯେ କୌଣସି ରୋଗର ହାନିକାରକ ଦିଗ ପ୍ରତି ସତର୍କ କରିବା ଅର୍ଥ, ରୋଗୀ ବ୍ୟକ୍ତିଙ୍କ ନିନ୍ଦା କରିବା ନୁହେଁ । ସେହିଭଳି ଅସଙ୍ଗତ ନୀତି ନିୟମର ଆଲୋଚନା କରିବା ଅର୍ଥ, ସମାଜର ନିନ୍ଦା ନୁହେଁ କିମ୍ବା ରୋଗୀଙ୍କୁ ସର୍ବଦା ଅସୁସ୍ଥ ରଖି ସ୍ୱାର୍ଥସିଦ୍ଧ କରୁଥିବା ବର୍ଗର ଲୋକମାନଙ୍କ, ସମାଲୋଚନା କରିବା ମଧ୍ୟ ରୋଗୀମାନଙ୍କର ନିନ୍ଦା କରିବା ଉଦ୍ଦେଶ୍ୟ ନୁହେଁ ।

ଠକ ଲୋକମାନଙ୍କୁ ନିନ୍ଦା କରିବା ଏବଂ ସେମାନଙ୍କ ଠକିବା କୌଶଳ ଗୁଡ଼ିକର ପ୍ରାମାଣିକ ତଥ୍ୟ ପ୍ରକାଶ କରିବା ଦ୍ୱାରା, ଠକି ହେଉଥିବା ଲୋକମାନଙ୍କୁ ଆହତ କରିବ କାହିଁକି ? ଏକ ଚମତ୍କାରୀ ବିଦ୍ୟାର କୌଶଳକୁ ଖୋଜି ବାହାର କରିବା କାମ, ଏକ ବୁଦ୍ଧିବାଦୀ ଓ ସାହସୀ ବ୍ୟକ୍ତି ହିଁ କରିପାରିବ । ତାଙ୍କର ଉଦ୍ଦେଶ୍ୟ ହେଉଛି - ଜନତା ଠକି ନହେବା ପାଇଁ ସଚେତନ ଓ ସତର୍କ କରାଇବା । ଧର୍ମ ବ୍ୟବସାୟୀମାନଙ୍କ ଜାଲରୁ ଜନତାଙ୍କୁ ମୁକ୍ତ ରଖିବା ପାଇଁ, ଧର୍ମର କେତେକ ଅସଙ୍ଗତ ବିଚାରକୁ ସମାଲୋଚନା କରିବା, ଆବଶ୍ୟକ ହୋଇ ପଡୁଛି । ତେଣୁ ଏହା ସମାଜ ବିରୋଧି କାମ ନୁହେଁ ବରଂ ସମାଜକୁ ସ୍ୱଚ୍ଛ ଓ ସୁସ୍ଥ ରଖିବା ପାଇଁ ଏକ ସାହସିକ ପ୍ରୟାସ ।

ହିନ୍ଦୁମତବାଦ ଏବଂ ହିନ୍ଦୁସମାଜର ସ୍ୱରୂପକୁ ବୁଝିବା ପାଇଁ, ଏହି ଦୁଇଟିକୁ ଅଲଗା ଅଲଗା ନାମ ଦେବା ଉଚିତ । ସାଧାରଣତଃ ଯାହାକୁ ହିନ୍ଦୁ ଧର୍ମ କୁହାଯାଉଛି, ତାହାକୁ ବ୍ରାହ୍ମଣ

ଧର୍ମ କୁହାଯିବା ଉଚିତ । ବ୍ରାହ୍ମଣ ଅର୍ଥାତ ଭାରତରେ ପ୍ରଚଳିତ ଧାର୍ମିକ ବିଶ୍ୱାସ ଏବଂ ସିଦ୍ଧାନ୍ତର ପ୍ରବର୍ତ୍ତକ ଓ ବ୍ୟାଖ୍ୟାକାର ବ୍ୟକ୍ତିମାନଙ୍କୁ ବୁଝାଏ । ଏହିମାନଙ୍କର ଜନସଂଖ୍ୟା ସମାଜରେ, କମ ହେଲେ ବି ପ୍ରଭାବ କିନ୍ତୁ ଅତି ଶକ୍ତିଶାଳୀ ।

ଅନ୍ୟାନ୍ୟ ବୈଦିକ ମତବାଦରେ ମୂଳତଃ ବିଶେଷ ଅନ୍ତର ନାହିଁ । ଅନ୍ତର ରହୁଛି ଧର୍ମ ପ୍ରବର୍ତ୍ତକମାନଙ୍କ ଭିତରେ । ଯେମିତି ଗୋଟିଏ ରାଜା, ଅନ୍ୟ ଏକ ରାଜାକୁ ପରାଜିତ କରି, ତାଙ୍କ ରାଜ୍ୟକୁ ଶାସନ କରିବାକୁ ଚାହୁଁଛନ୍ତି, ଠିକ ସେହିଭଳି, ଭିନ୍ନ ମତବାଦର ଧର୍ମାଚାର୍ଯ୍ୟମାନେ, ନିଜର ପ୍ରଭୁତ୍ୱ ପ୍ରତିଷ୍ଠା କରିବା ପାଇଁ, ପରସ୍ପର ଭିତରେ ଦ୍ୱେଷ ଓ ଇର୍ଷା ରଖୁଛନ୍ତି । ସେମାନଙ୍କ ଭିତରେ, ସୈଦ୍ଧାନ୍ତିକ ମତଭେଦ ନଥିଲେ ବି ନିଜର ଅହଙ୍କାର ଓ ପ୍ରତିଷ୍ଠା ପାଇଁ ପ୍ରତିଦ୍ୱନ୍ଦ୍ୱିତା ଲାଗିରହିଛି । ସେମାନଙ୍କ ଭିତରେ ଘଟୁଥିବା ସଂଘର୍ଷର କୁପରିଣାମ, ଆଜି ପ୍ରାୟ ପ୍ରତ୍ୟେକ ନାଗରିକ ଦେଖି ପାରୁଛନ୍ତି ।

ଜଗତକୁ ମିଥ୍ୟା ଓ ଧନକୁ ମାୟା ବୋଲି ପ୍ରବଚନ ଦେଉଥିବା ଧର୍ମଗୁରୁମାନେ, ଆଜି କେବଳ ମଠ ଓ ମନ୍ଦିରରେ ଜମା ହେଉଥିବା ଧନ ସମ୍ପତ୍ତି ପାଇଁ ଲାଳାୟିତ ରହୁଥିବା ଦୃଶ୍ୟ ଦେଖିବାକୁ ମିଳୁଛି ।

ଏଇଠି ପ୍ରଶ୍ନ ଉଠୁଛି - ଅନ୍ୟର ଶିଷ୍ୟ ବା ଅନୁଗତମାନଙ୍କୁ ନିଜର ଜାଗୀର ସମ୍ପତ୍ତି ରୂପେ ସଂଖ୍ୟା ବୃଦ୍ଧିପାଇଁ ପରସ୍ପର ଭିତରେ ଯୁଦ୍ଧ କରୁଥିବା ଧର୍ମଗୁରୁ ବା ବ୍ରାହ୍ମଣମାନଙ୍କୁ ଆମେ ସମାଜର ପ୍ରତିନିଧି ବୋଲି ମାନିବା କାହିଁକି ? ହେତୁବାଦ କେବେ ବି ହିନ୍ଦୁ ବିରୋଧୀ ନୁହେଁ । ବିରୋଧ କରାଯାଉଛି - କେବଳ ପ୍ରାଚୀନ ଧର୍ମବାଦକୁ, ଯାହା ବିଭିନ୍ନ ସମୟରେ ରୂପ ପରିବର୍ତ୍ତନ କରି, ସମାଜର ଜୀବନ ଶକ୍ତିକୁ ତିଳ ତିଳ କରି ନଷ୍ଟ କରୁଛି । ହେତୁବାଦ ସେହି ଧର୍ମବାଦ ଉପରେ, ବୈଜ୍ଞାନିକ ଦୃଷ୍ଟିକୋଣ ଓ ତର୍କସଙ୍ଗତ ବିଚାର ସହିତ ଅଙ୍କୁଶ ଲଗାଇବାକୁ ପ୍ରୟାସ କରୁଛି ।

********

# ହାଇଟେକ ପୂଜା ପଦ୍ଧତି ଓ ଧନୀ ଭକ୍ତ

ଆଗରୁ ଯେତେ ପ୍ରକାର ପୂଜା ପଦ୍ଧତି ପ୍ରଚଳିତ ଥିଲା, ସେ ସବୁ ଆଜି ପୁରୁଣା କାଳିଆ ହେବାକୁ ବସିଲାଣି । ଆଗରୁ ସଡକ ନଥିଲା, ଯାତାୟାତ କରିବାପାଇଁ ଯାନବାହାନ ନଥିଲା । ତେଣୁ ଘର ଠାରୁ ଦୂରରେ ଥିବା, କୌଣସି ପ୍ରସିଦ୍ଧ ମନ୍ଦିର କିମ୍ବା ତୀର୍ଥସ୍ଥଳକୁ ଭକ୍ତମାନେ, ପାଦରେ ଚାଲି ଚାଲି ଯାଉଥିଲେ । ସମସ୍ତଙ୍କ ପାଇଁ ଯାତ୍ରା କରିବା ସମ୍ଭବ ହୋଇ ପାରୁନଥିଲା । ଯେଉଁମାନେ ଯାଇ ପାରୁଥିଲେ, ସେମାନଙ୍କର ଅନେକ ସମୟ ନଷ୍ଟ ହେଉଥିଲା ଓ ଯଥେଷ୍ଟ ଶାରୀରିକ ପରିଶ୍ରମ ବି କରିବାକୁ ପଡୁଥିଲା । ମନ୍ଦିରମାନଙ୍କରେ ଦାନ ଦକ୍ଷିଣା ସେତେବେଳେ ବି ଦେବାକୁ ପଡୁଥିଲା, ଆଜି ବି ଦେବାକୁ ପଡୁଛି । ସମୟକ୍ରମେ ଯାନବାହନ ତିଆରି ହୋଇ, ସଡକମାନଙ୍କରେ ଦୌଡିବା ଦ୍ୱାରା ଭକ୍ତମାନଙ୍କର, ପରିଶ୍ରମ ଓ ସମୟ ନଷ୍ଟ ହେଉନାହିଁ ।

ଯୁଗ ତ ରକେଟ ଗତିରେ ଆଗେଇ ଚାଲିଛି । କାର, ବସ, ଟ୍ରେନ ଓ ଉଡ଼ାଜାହାଜରେ ତୀର୍ଥଯାତ୍ରା କଲେ ବି ସମୟ ନିଅଣ୍ଟ ପଡୁଛି । ଚାକିରି ହେଉ ବା ବ୍ୟବସାୟ, ସବୁଠି ସମୟର ମୂଲ୍ୟ ବଢିଯାଇଛି । ଧର୍ମଭୀରୁ ମଣିଷ ମନ୍ଦିରକୁ ନଗଲେ ଶାନ୍ତି ପାଉନି, ଏଣେ ମନ୍ଦିରକୁ ଯିବାକୁ ସମୟ ମିଳୁନି । ଏହିଭଳି ମାନସିକ ଦ୍ୱନ୍ଦ୍ୱ ଭୋଗ କରୁଥିବା ଭକ୍ତମାନଙ୍କ ପାଇଁ ତଥାକଥିତ ଭଗବାନ "ବୈଜ୍ଞାନିକ ଅବତାର" ନେଇ ପୃଥିବୀକୁ ଓହ୍ଲାଇ ଆସିଲେ । ସେ ଗତ କିଛି ବର୍ଷ ପୂର୍ବରୁ, ଯୋଗାଯୋଗ ମାଧମକୁ, ହାଇଟେକ କରିଦେଲେ । ସେଥିରେ ସବୁଠାରୁ ଉନ୍ନତି ହୋଇଛି ଇଣ୍ଟରନେଟ ସୁବିଧା ।

କିଛିବର୍ଷ ପୂର୍ବରୁ, ଧର୍ମର ପ୍ରଚାର ଏବଂ ଭଗବାନଙ୍କର ବିଜ୍ଞାପନ ପାଇଁ ରେଡ଼ିଓ, ଟି.ଭି, ଏବଂ ମନ୍ଦିରମାନଙ୍କରେ ଡ଼ାକବାଜି ଯନ୍ତ୍ର ପ୍ରୟୋଗ ହେଉଥିଲା । ବର୍ତ୍ତମାନ ସେତିକିରେ କାମ ଚଳୁନାହିଁ । କାରଣ ଧନୀ ଭକ୍ତମାନଙ୍କ ପାଖରେ ସମୟ ଅଭାବ ଯୋଗୁଁ, ମନ୍ଦିର ପର୍ଯ୍ୟନ୍ତ ପହଞ୍ଚି ପାରୁନାହାନ୍ତି । ପଚାଶ ଜଣ ସାଧାରଣ ଭକ୍ତ ଯେତିକି ଧନ ଦାନ ଦେଇପାରିବେ, ଜଣେ ମାତ୍ର ଧନୀ ଭକ୍ତ, ସେମାନଙ୍କଠାରୁ ଅଧିକ ଦକ୍ଷିଣା ଦେଇପାରିବ । ଏହି ସମସ୍ୟାର ସମାଧାନ ମିଳିଗଲା । ଇଣ୍ଟରନେଟ ଦ୍ୱାରା ୱେବସାଇଟ ତିଆରି କରି, ଦେବୀ ଦେବତାଙ୍କ ମନ୍ଦିରମାନଙ୍କରେ ହେଉଥିବା, ପୂଜା ପଦ୍ଧତିକୁ ଭକ୍ତମାନଙ୍କ ପାଖରେ ପହଞ୍ଚାଇ ଦିଆଗଲା ।

ବର୍ତ୍ତମାନ ଆଉ କିଛି ସମସ୍ୟା ନାହିଁ । ଆପଣଙ୍କ ଇଷ୍ଟ ଦେବତାଙ୍କ ୱେବସାଇଟ ଖୋଲି ଦେଖନ୍ତୁ, ଆପଣଙ୍କର ସମସ୍ତ ସମସ୍ୟାର ନିଦାନ ଆଙ୍ଗୁଠି ଟିପରେ ପାଇବେ । ମେସେଜ ପଢିବେ - "ଆମକୁ ଗୋଟିଏ ମାତ୍ର ଇ-ମେଲ ପଠାଇ ଦିଅନ୍ତୁ, ଆପଣ କେଉଁ ସମସ୍ୟା ପାଇଁ ପୂଜା କରିବାକୁ ଚାହୁଁଛନ୍ତି ? ଆମେ ଆପଣଙ୍କ ନାମରେ ପୂଜା, ଅର୍ଚ୍ଚନା କରାଇଦେବୁ । ଆପଣ କେଉଁ ମନ୍ଦିରରେ, କେଉଁ ଦେବତାଙ୍କୁ, କେଉଁଭଳି ପୂଜା କରାଇବାକୁ ଚାହୁଁଛନ୍ତି, ଲେଖି ଦିଅନ୍ତୁ । ଆପଣ ତ ଜାଣନ୍ତି, ବିନା ଦାନ ଦକ୍ଷିଣାରେ କୌଣସି ପୂଜା ହୋଇ ପାରିବନାହିଁ । ତେଣୁ ଆପଣ ଦାନ ରାଶି ବ୍ୟାଙ୍କଚେକ, ଡିମାଣ୍ଡଡ୍ରାଫ୍ଟ କିମ୍ବା କ୍ରେଡିଟ କାର୍ଡ ମାଧ୍ୟମରେ ଜମା କରିପାରିବେ । ପୂଜା କରିସାରି ଆମେ ଆପଣଙ୍କ ଠିକଣାରେ ଏହାର ରସିଦ ଓ ପ୍ରସାଦ ଡାକ ଯୋଗେ ପଠାଇଦେବୁ । ଏଥିରେ ଆମର କୌଣସି ସ୍ୱାର୍ଥ ନାହିଁ । ଆମେ କେବଳ ମାନବଙ୍କ ସେବାପାଇଁ, ଏହି ଧାର୍ମିକ କାମ କରୁଛୁ । ଆପଣଙ୍କ ମୂଲ୍ୟବାନ ସମୟ ନଷ୍ଟ ନକରି, ଘରେ ବସି ଠାକୁରଙ୍କ ପୂଜା କରନ୍ତୁ ଏବଂ ପୂଣ୍ୟ ଅର୍ଜନ କରନ୍ତୁ ।"

ଆମଦେଶରେ କାହାକୁ ମଧ୍ୟ 'ଇମୋସନାଲ ବ୍ଲାକମେଲ' କରି ତା'ଠାରୁ ଧନ ଠକି ନେବା ଏକ ସାଧାରଣ ବ୍ୟବସାୟ ପାଲିଛି । ସେହି ଯୋଗୁଁ ଇଣ୍ଟରନେଟ ଦ୍ୱାରା ଧାର୍ମିକ ଆସ୍ଥାକୁ ବ୍ୟବହାର କରି ଧର୍ମ ନାମରେ ବ୍ୟବସାୟ କରୁଥିବା ବ୍ୟକ୍ତି, ଖୁବ ଶୀଘ୍ର, ଅଧିକ ଧନ ଲୁଣ୍ଠନ କରିବାପାଇଁ, ଏକ ସହଜ ପନ୍ଥା ଆବିଷ୍କାର କରିପାରିଲେ ।

ଧନ ରୋଜଗାର କରିବାପାଇଁ, ଅତି ମାତ୍ରାରେ ବ୍ୟସ୍ତ ରହୁଥିବା ମଣିଷମାନେ, ନିଜ ପରିବାର ସହିତ ବସି ଦୁଇପଦ ଖୁସି ଗପ କରିବାକୁ ସମୟ ପାଆନ୍ତି ନାହିଁ । ତେଣୁ ସେମାନେ ମଧ୍ୟ ପୂଜା ପାଇଁ ମେସେଜ ପଠାଇ ଦେଇ ନିଜର ଧର୍ମକର୍ମଟି କରିଦିଅନ୍ତି । ଏହିଭଳି ସମୟରେ ତଥାକଥିତ ଭଗବାନଙ୍କ ପୂଜା ବି 'ଅନ ଲାଇନ' ହୋଇଯିବା କିଛି ଆଶ୍ଚର୍ଯ୍ୟ କଥାନୁହେଁ ।

ଯେଉଁମାନେ ବିଦେଶରେ ରହୁଛନ୍ତି କିମ୍ବା ତୀର୍ଥ ସ୍ଥାନକୁ ଯିବା ପାଇଁ ସମୟ ପାଉନାହାନ୍ତି, ସେମାନେ ଘରେ ବସି ଜଗନ୍ନାଥ, କେଦାରନାଥ, ରାମେଶ୍ୱର, ବଦ୍ରୀନାଥ, ବୈଷ୍ଣବ ଦେବୀ, ତିରୁପତି ବାଲାଜୀ, ସିରିଡ଼ି ସାଇବାବା, ସିଦ୍ଧି ବିନାୟକ ଇତ୍ୟାଦି ତୀର୍ଥ ସ୍ଥଳମାନଙ୍କର 'ଅନଲାଇନ ଦର୍ଶନ' କରିବା ସହିତ, ପୂଜା ଅର୍ଚ୍ଚନା ମଧ୍ୟ କରାଇ ପାରୁଛନ୍ତି । 'ଭକ୍ତର ଭଗବାନ' ବର୍ତ୍ତମାନ ବିଜ୍ଞାନ ଯୋଗୁଁ ଭକ୍ତଙ୍କ ପାଖରେ ଯାଇ ହାଜର ହୋଇ ଯାଉଛନ୍ତି । ଏହା ପୂର୍ବରୁ ଭକ୍ତ ଯେତେ ମନଦେଇ ସ୍ମରଣ କଲେ ମଧ୍ୟ ଠାକୁର ଦର୍ଶନ ଦେଉନଥିଲେ ।

ଆଜିର ଶିକ୍ଷିତ ଓ ଧନୀ ସମାଜରେ ଏହି ପଦ୍ଧତିର ଡିମାଣ୍ଡ ବଢ଼ିବାରେ ଲାଗିଛି । ନିଜର ଆର୍ଥିକ କ୍ଷମତା ଅନୁସାରେ, ନିଜର ପସନ୍ଦର ଦେବତାଙ୍କୁ ପୂଜା କରିବାକୁ ଇ-ମେଲ ପଠାନ୍ତୁ । ଆଧ୍ୟାତ୍ମିକ ପୋର୍ଟାଲ ଓ ଇଣ୍ଟରନେଟ ସଉକ ରଖୁଥିବା ଭକ୍ତମାନେ ଘରେବସି ମନ୍ଦିରରେ ହେଉଥିବା, କର୍ମକାଣ୍ଡର ଭିଡିଓ ଚିତ୍ର ଦେଖିପାରିବେ । ସେମାନଙ୍କ ପାଖକୁ ପୂଜାର ଡି.ଭି.ଡି, ଆଶୀର୍ବାଦ ପୁଷ୍ପ, ସିନ୍ଦୁର ଆଦି ଡାକ କିମ୍ବା କୋରିୟର ଯୋଗେ ପୂଜାରୀମାନେ ପଠାଇ ଦେବେ । ଆପଣଙ୍କ ପୂଜା କେତେସମୟ ପାଇଁ ହେବ ? କେତେ ପରିମାଣରେ ପୂଜାସାମଗ୍ରୀ ଲାଗିବ ? ତାହା ଆପଣଙ୍କ ଦାନ ରାଶି ପଠାଇବା ଉପରେ ନିର୍ଭର କରୁଛି । ଏହାକୁ "କଷ୍ଟ ମାଇଜେଡ଼" ପୂଜା କୁହାଯାଏ ।

ପ୍ରସିଦ୍ଧ ଧର୍ମପୀଠମାନଙ୍କର ନିଜ ନିଜର 'ୱେବସାଇଟ' ଅଛି । କ୍ୟାଥୋଲିକ ସମ୍ପ୍ରଦାୟ ପାଇଁ "ଆର୍କ ବମ ଡଟ କମ", ଇସଲାମ ଧର୍ମପାଇଁ "ଇସଲାମ ଡଟ କମ, ଜୈନ ଧର୍ମପାଇଁ "ଜୈନୀଜିମ ଡଟ କମ" ଶିଖ ଧର୍ମପାଇଁ "ଆନନ୍ଦପୁର ସାହିବ ଡଟ ଓଆରଜି", ହିନ୍ଦୁଧର୍ମ ପାଇଁ ଅନେକ ୱେବ ସାଇଟ ଅଛି । "ପ୍ରାର୍ଥନା ଡଟ କମ" ସାଇଟରେ ଦୁଇଶ ପଚାଶରୁ ଊର୍ଦ୍ଧ୍ୱ ତଥାକଥିତ ଦେବୀ ଦେବତାଙ୍କ ପୂଜା ପଦ୍ଧତି ଭରିରହିଛି, ପୂଜା କରାଇବାକୁ ଚାହିଁଲେ, ସେମାନଙ୍କ ନିର୍ଦ୍ଧାରିତ ଧନ ରାଶି ଆପଣ ପଠେଇ ଦିଅନ୍ତୁ, ବାକି କାମ ସେମାନେ କରିଦେବେ ।

ସେମାନେ ସତରେ ପୂଜା କରୁଛନ୍ତି କି ନାହିଁ ଜାଣିବାର ଉପାୟ ନାହିଁ । କିନ୍ତୁ ଭକ୍ତର ବିଶ୍ୱାସ ରହୁଛି ଯେ ସେମାନେ ନିଶ୍ଚୟ କରୁଥିବେ । ପ୍ରମାଣ ସ୍ୱରୂପ ତଥାକଥିତ ଭଗବାନ ଠାରୁ ଯଦି ଆଶାନୁରୂପେ ଫଳ ମିଳୁଥାନ୍ତା, ତେବେ ଭକ୍ତ ନିଶ୍ଚିତ ହୋଇ କହି ପାରନ୍ତା ଯେ, ମୁଁ ଅମୁକ ଦେବତାଙ୍କୁ ପୂଜାପାଇଁ ଏତିକି ଖର୍ଚ୍ଚ କରିଥିବାରୁ ମୋର ମନୋକାମନା ପୂରଣ ହୋଇଛି । ତାହା ତ କସ୍ମିନ କାଳେ ହେଉନି । ସଂଯୋଗ ବଶତଃ କେବେ କାହାରି ଆଶା ପୂରଣ ହୋଇଗଲେ, ଖୁସିରେ ସେହି ଦେବତାଙ୍କ ପ୍ରଶଂସା କରି ଖୁବ ପ୍ରଚାର କରନ୍ତି । କିନ୍ତୁ ଆଶା ପୂରଣ ନହେଲେ ମଧ୍ୟ ସେମାନେ ପୂଜାରୀ କିମ୍ବା ଦେବତାଙ୍କୁ ଦୋଷ ଦେଇ ନଥାନ୍ତି । ଏଥିପାଇଁ ନିଜର ଦୁର୍ଭାଗ୍ୟ ଅଥବା ପୂର୍ବଜନ୍ମର କର୍ମକୁ ଦୋଷ ଦିଅନ୍ତି ।

ପରିତାପର ବିଷୟ ହେଉଛି - ଆଜି ବିଜ୍ଞାନର ସମସ୍ତ କ୍ଷେତ୍ରରେ ବିକାଶ ଘଟିଥିଲେ ବି ଅଧିକାଂଶ ମଣିଷ ମାନସିକ ସ୍ତରରେ, ଅନ୍ଧଶ୍ରଦ୍ଧାରେ ବୁଡି ରହିଛନ୍ତି । ଟିକିଏ ବି ନିଜର ବୁଦ୍ଧି

ପ୍ରୟୋଗ କରି ଜାଣିବାକୁ ଚାହୁଁନାହାନ୍ତି ଯେ, ଏହିଭଳି ପୂଜାର ଅର୍ଥ କଅଣ ? କେବଳ ଧନ ବ୍ୟୟକରି ସବୁ ଦୁଃଖ ଦୂର ହୋଇଯିବାର ସ୍ୱପ୍ନ ଦେଖୁଛନ୍ତି ।

କିଛିବର୍ଷ ତଳେ ଜଗନ୍ନାଥ ମନ୍ଦିରରେ ଭକ୍ତମାନଙ୍କ ସହ ପଣ୍ଡା ପୂଜାରୀଙ୍କ ଦୁର୍ବ୍ୟବହାର ଓ ଜିଦଖୋର ମନୋବୃତ୍ତି ଦେଖି ସମସ୍ତଙ୍କର, ଅସନ୍ତୋଷ ବୃଦ୍ଧି ପାଉଥିବା ସ୍ଥଳେ, କେବଳ ଘରେ ବସି 'ଅନଲାଇନ' ପୂଜା କରେଇ ଦେବାର ପ୍ରତିଶ୍ରୁତି, କେତେ ଦୂର ବିଶ୍ୱସନୀୟ, ସେ କଥା ଭକ୍ତଗଣ ବୁଝିବା ଉଚିତ ।

ଆଜିର ଶିକ୍ଷିତ ତଥା ସଚେତନ ଗ୍ରାହକ ବଜାରରୁ କୌଣସି ଭୌତିକ ବସ୍ତୁ କିଣିବା ପୂର୍ବରୁ ଅନେକ ପ୍ରକାର ଗ୍ୟାରେଣ୍ଟି ଦାବି କରୁଛି । କୌଣସି ବସ୍ତୁ ଗ୍ୟାରେଣ୍ଟି ଅବଧିରେ ଖରାପ ହୋଇଗଲେ, କ୍ଷତି ପୂରଣ ଦାବିକରି 'କନ୍‌ଜ୍ୟୁମର କୋର୍ଟ' ପର୍ଯ୍ୟନ୍ତ ଦୌଡ଼ି ଯାଉଛି, କିନ୍ତୁ ମଜାକଥା ହେଉଛି - ଧର୍ମ ଦୋକାନରୁ କୌଣସି ଗ୍ୟାରେଣ୍ଟି ନଥିବା ଜିଣିଷ କିଣି, ନିଜର କଷ୍ଟ ଉବଧ ଧନ ଦାନକରି, ନିରାଶ ହେଲେ ବି କେହି ପ୍ରତିବାଦ କରନ୍ତି ନାହିଁ । ଗୋଟିଏ ଦୋକାନରୁ କିଣିଥିବା ବସ୍ତୁ ଯଦି ଖରାପ ହୁଏ, ଗ୍ରାହକ ପୁନର୍ବାର ସେହି ଦୋକାନକୁ ଯାଏନାହିଁ । କିନ୍ତୁ ବାରମ୍ବାର ଠକି ହୋଇ ମଧ, ଅନ୍ଧଭକ୍ତ ଜୀବନ ଥିବା ପର୍ଯ୍ୟନ୍ତ ଧର୍ମ ଦୋକାନକୁ ଯିବା ବନ୍ଦ କରେନାହିଁ । ସେ ଶେଷ ପର୍ଯ୍ୟନ୍ତ ବୁଝି ପାରେ ନାହିଁ ଯେ "ମୁଁ ସତରେ ସବୁବେଳେ ଠକି ହେଉଛି, ମୋ ସମସ୍ୟାର ସମାଧାନ ଏଇଠି ନାହିଁ , ବରଂ ଅନ୍ୟ କେଉଁଠି ଅଛି । ମୋ ଦୁଃଖର ଅବସାନ କେବଳ ପୂଜା, ଅର୍ଚ୍ଚନା, ଦାନ, ଦକ୍ଷିଣା ଦ୍ୱାରା ହେବନି, ସେଥିପାଇଁ ଅଲଗା ଭାବେ ଦୁଃଖର କାରଣ ଖୋଜି, ତା'ର ନିବାରଣ କରିବାକୁ ପଡିବ ।"

'ଅନଲାଇନ' ପୂଜା ପଦ୍ଧତି ଦ୍ୱାରା ଆସ୍ତିକମାନଙ୍କର ଆର୍ଥିକ କ୍ଷତି ହେଉଥିଲେ ବି ଆମ ମତରେ କିଛି ଫାଇଦା ମଧ ଅଛି । ସମସ୍ତ ଧର୍ମ ସ୍ଥଳରେ ଯେଉଁ ଭଳି ଜନଗହଳି ହେଉଛି, ସେଠାରେ ବେଳେ ବେଳେ କୌଣସି ଅଘଟଣ ଯୋଗୁଁ ଦଳା ଚକଟାରେ, ଶହଶହ ଭକ୍ତ ପ୍ରାଣ ହରାଉଛନ୍ତି । ସେହି ବିପଦରୁ ଏମାନେ ରକ୍ଷା ପାଉଛନ୍ତି । ଅର୍ଥାତ ଧନହାନୀ ହେଉପଛେ, ପ୍ରାଣହାନୀ ନହେଉ । ତୀର୍ଥଯାତ୍ରା ସମୟରେ ଯାନବାହନର ଦୁର୍ଘଟଣା, ସେଠାରେ ରହିବା ବ୍ୟବସ୍ଥା ଠିକ ନଥାଏ, ଖାଦ୍ୟ ଓ ପାନୀୟ ପଦାର୍ଥର କ୍ୱାଲିଟି ନିମ୍ନ ସ୍ତରର ହେଉଥିବାରୁ, ଅସୁସ୍ଥ ହେବାର ଭୟ ରହିଥାଏ । ତୀର୍ଥ କରି ଫେରୁଥିବା ଅଧିକାଂଶ ଭକ୍ତ ଅଶାନ୍ତି ପ୍ରକଟ କରିଥାନ୍ତି । 'ଅନ ଲାଇନ' ପୂଜା କରାଇଲେ ସେସବୁ ଭୟ ନଥାଏ ।

'ଅନଲାଇନ' ପୂଜା ପଦ୍ଧତି ଦ୍ୱାରା ଆଉ ଗୋଟିଏ ବଡ଼ ଫାଇଦା ହେଉଛି - କିଛି କମ୍ପ୍ୟୁଟର ଶିକ୍ଷା ପ୍ରାପ୍ତ କରିଥିବା ଯୁବକ ଏହି ବ୍ୟବସାୟ ଦ୍ୱାରା ରାତାରାତି, କୋଟିପତି ନହେଲେ ବି ଲକ୍ଷପତି ହେବାର ସମ୍ଭାବନା ଦେଖୁଛନ୍ତି ।

ସେଥିପାଇଁ ଆମେ ମୁକ୍ତ କଣ୍ଠରେ କହିବୁ - ଜୟ ହୋ ଇଣ୍ଟରନେଟ, ଜୟ ହୋ ହାଇଟେକ ପୂଜା ପଦ୍ଧତି । ବିଜ୍ଞାନକୁ ସୀମିତ ଓ ଆଧାତ୍ମିକକୁ ଅସୀମ କହୁଥିବା ବ୍ୟକ୍ତିମାନେ, ଆଜି ବିଜ୍ଞାନ ଯୋଗୁଁ ହିଁ ଅସୀମିତ ଧନ ରୋଜଗାର କରିପାରୁଛନ୍ତି, ଏକଥା ସେମାନେ ଅସ୍ୱୀକାର କରି ପାରିବେନି ।

*********

## ଶିକ୍ଷାର ମହତ୍ତ୍ୱ

ସାଧାରଣତଃ ଦେଖା ଯାଉଛି ଯେ ଦୁନିଆର ଯେତେ ଉଚ୍ଚ ସକ୍ଷିତ ହୋଇଥିଲେ ବି କିଛି ଲୋକମାନେ, ଧର୍ମ ଓ ଈଶ୍ୱରଙ୍କ ଉପରେ ପ୍ରଶ୍ନ ଉଠିଲେ, ନିଜର ପ୍ରାପ୍ତ ଶିକ୍ଷାର ଡିଗ୍ରୀ ସବୁ ଅଲଗା ରଖି ଦେଉଛନ୍ତି । ତା'ପରେ ସେମାନେ ଯେଉଁ ତର୍କ ଦେଇ ଧାର୍ମିକ ଜ୍ଞାନ ବଖାଣ କରନ୍ତି, ସେ ଗୁଡିକ ତାଙ୍କର ପ୍ରାପ୍ତ ଜ୍ଞାନର ସମ୍ପୁର୍ଣ୍ଣ ପରିପନ୍ଥୀ । ଯେଉଁ ଶିକ୍ଷା ଦ୍ୱାରା, ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ ହୋଇ ପାରୁନି, ସତ ଓ ମିଛର ପ୍ରଭେଦ ବୁଝା ପଡୁନି, ସେହି ଉଚ୍ଚ ଶିକ୍ଷାର ମୂଲ୍ୟ କଅଣ?

# ସନ୍ୟାସ ଗ୍ରହଣର ଆବଶ୍ୟକତା

ମଣିଷ ପାଇଁ ସନ୍ୟାସ ଗ୍ରହଣର ଆବଶ୍ୟକତା ଅଛି କି ନାହିଁ, ସେ ବିଷୟରେ ଅହେତୁକ ଧର୍ମବିଶ୍ୱାସୀ ଲୋକମାନଙ୍କୁ ବୁଝାଇବା ସର୍ବଦା କଠିନ ହୋଇଥାଏ । କାରଣ ଧର୍ମ ଓ ଧର୍ମୀୟ କର୍ମକାଣ୍ଡ ବିଷୟରେ ପ୍ରଶ୍ନ ନକରି, ଆଖି ସହିତ ନିଜର ମସ୍ତିଷ୍କର ଦ୍ୱାରକୁ ବନ୍ଦ ରଖିବା ପାଇଁ, ପିଲାଟି ଦିନରୁ ନିର୍ଦ୍ଦେଶ ଦିଆଯାଇଥାଏ । ଧର୍ମଗୁରୁମାନେ, ଚାହାନ୍ତି ନାହିଁ ଯେ ଆଦିମ କାଳରୁ ଯେଉଁ ବିଷୟକୁ ନବୁଝି, ସରଳ ବିଶ୍ୱାସୀ ଲୋକମାନେ, ସତ୍ୟ ବୋଲି ମାନି ଆସିଛନ୍ତି, ସେ ବିଷୟରେ କେହି ଦୋଷ ଦେଖାଇ, ତାଙ୍କର ଭକ୍ତଙ୍କ ମନକୁ ସଚେତନ କରନ୍ତୁ । ଯଦି କେହି ହେତୁବାଦୀ ସେହି କାମ କରେ, ତେବେ ସେ ଧର୍ମଗୁରୁମାନଙ୍କର ପରମ ଶତ୍ରୁ ହୋଇଯା'ନ୍ତି । ଧର୍ମଗୁରୁମାନେ, ହେତୁବାଦୀଙ୍କୁ କଟୁ ସମାଲୋଚନା କରନ୍ତି, ସମୟ ଓ ସୁବିଧା ଦେଖି ସେମାନଙ୍କୁ ବିଭିନ୍ନ ପ୍ରକାର ଶାରୀରିକ ଓ ମାନସିକ ନିର୍ଯ୍ୟାତନା ଦିଅନ୍ତି । ନିର୍ଯ୍ୟାତନା ଦେବା କାମଟି ସୁନିୟୋଜିତ ଢଙ୍ଗରେ, ସଙ୍ଗଠିତ ଭାବେ କରାଯାଏ, ଯାହା ଫଳରେ ସତ୍ୟ ଖୋଜିଥିବା ଲୋକଟି ହତୋତ୍ସାହ ହୋଇ ଭାଙ୍ଗି ପଡିବ । ଏହା ପଛରେ ରହିଥିବା ଅପ୍ରିୟ ସତ୍ୟ ହେଉଛି - ଧର୍ମର ଶାଶ୍ୱତ ବ୍ୟବସାୟ । ହଜାର ହଜାର ବର୍ଷରୁ ଏହି ଧନ୍ଦା ଯୋଗୁଁ, ସାଧାରଣ ଜନତା, କେବଳ ଠକି ହୋଇ ଚାଲିଛନ୍ତି । କାକତାଳିକ ନ୍ୟାୟରେ କିଛି ନା କିଛି ପାଇଗଲେ, ତଥାକଥିତ ସାଧୁ ସନ୍ୟାସୀଙ୍କ ମହିମା ଯୋଗୁଁ, ପାଇଗଲି ବୋଲି ଭାବନ୍ତି ଏବଂ କିଛି ନପାଇଲେ, ଆସନ୍ତା ଜନ୍ମରେ , ଅବଶ୍ୟ ପାଇବାର ଆଶ୍ୱାସନା ପାଆନ୍ତି ।

ଏକଥା ସମସ୍ତେ ମାନିବେ ଯେ, ଅନେକ ବର୍ଷରୁ ବିଭିନ୍ନ ସ୍ଥାନରେ ବିଭିନ୍ନ ଖ୍ୟାତି ସମ୍ପନ୍ନ ଧର୍ମଗୁରୁମାନଙ୍କର ବ୍ୟଭିଚାର ଲୋକଲୋଚନକୁ ଆସିଛି । ସେମାନଙ୍କ ଭିତରୁ ଅନେକ ଜେଲ କୋଠରୀରେ ମଧ୍ୟ ବସିଛନ୍ତି । ତଥାପି ଧର୍ମବିଶ୍ୱାସୀ ଲୋକମାନେ ପ୍ରତିଥର ଯୁକ୍ତି କରନ୍ତି - "ସବୁ ଧର୍ମଗୁରୁ ଖରାପ ନୁହନ୍ତି ।" ଆମେ କ'ଣ ଅପେକ୍ଷା କରିବା, କେତେ ପ୍ରତିଶତ ଧର୍ମଗୁରୁଙ୍କ ପରଦାଫାସ ହେବ, ସେମାନଙ୍କର ବ୍ୟଭିଚାର ଧରା ପଡିବ ଏବଂ ଆମେ କହିପାରିବା - ହଁ, ସବୁ ବାବାମାନେ ଖରାପ ?

ସେମାନଙ୍କର ଜୀବନ ଶୈଳୀ, କର୍ମ ଓ ପ୍ରବଚନକୁ ଧ୍ୟାନ ପୂର୍ବକ ଅନୁଧ୍ୟାନ କରି, ତର୍କସଙ୍ଗତ ଭାବେ ବିଶ୍ଳେଷଣ କରି, କିଏ ଭଲ ଆଉ କିଏ ମନ୍ଦ କହିବା କ'ଣ ଅନ୍ୟାୟ ?

ଯେକୌଣସି କ୍ଷେତ୍ରରେ ଠକି ହେବା ପୂର୍ବରୁ, ସତର୍କତା ଅବଲମ୍ବନ କରିବା ଜରୁରୀ ଥାଏ । ଠକିଯିବା ପରେ ସତର୍କ ହେବା ବା ଅନୁତାପ କରିବା କ'ଣ ବୁଦ୍ଧିମାନର କାମ?

କେତେକ ସମର୍ଥକ ଯୁକ୍ତି ଦର୍ଶାଇଥାନ୍ତି - "ସନ୍ୟାସୀମାନଙ୍କର ଜୀବନ ଶୈଳୀ ଅତ୍ୟନ୍ତ କଠିନ । ସେମାନଙ୍କର ତପସ୍ୟା ଓ ତ୍ୟାଗ ସମାଜର ଅଶେଷ ଉପକାର କରିଥାଏ ।" ତଥାକଥିତ ସନ୍ୟାସୀଙ୍କ ସପକ୍ଷବାଦୀମାନେ କେବେ ସ୍ଥିର ଚିତ୍ତରେ ନିଜକୁ ପ୍ରଶ୍ନ କରିନାହାନ୍ତି ଯେ, ପ୍ରକୃତରେ ସନ୍ୟାସୀମାନଙ୍କ ଦ୍ୱାରା ସମାଜର କେଉଁ ଭଳି ଉପକାର ହେଉଛି ?

ସେହିମାନଙ୍କ ଅବଗତି ନିମନ୍ତେ ଆମେ ସଂକ୍ଷିପ୍ତରେ କହି ପାରିବା ଯେ ସନ୍ୟାସୀ ହେଉଛି ଏକ ଆଧାତ୍ମିକ କୃତ୍ୟ । ସେୟାକୁ ପ୍ରଦର୍ଶିତ କରିବାପାଇଁ, କେତେକ ବ୍ୟକ୍ତି ତାଙ୍କର ପ୍ରଚଳିତ ବେଶ ଭୂଷାରେ ପରିବର୍ତ୍ତନ କରି, ସମାଜଠାରୁ ଭିନ୍ନ ତଥା ସ୍ୱତନ୍ତ୍ର ବୋଲି ପ୍ରମାଣିତ କରିଥା'ନ୍ତି । ସେମାନେ ସମାଜର ସମସ୍ତ ଦୈହିକ ପରିଶ୍ରମକୁ ତ୍ୟାଗ କରି, କେବଳ ଭଜନ, କୀର୍ତ୍ତନ,ପୂଜା ଅର୍ଚ୍ଚନା ଆଦି କରନ୍ତି । ଅନ୍ୟମାନଙ୍କୁ ମାନସିକ ଭାବେ ପ୍ରଭାବିତ କରିବାପାଇଁ ଧର୍ମଶାସ୍ତ୍ରରୁ ଉଦ୍ଧୃତ ବିଷୟକୁ ପ୍ରବଚନ ମାଧମରେ ପ୍ରଚାର କରନ୍ତି । ଏହି ପଦ୍ଧତି ପ୍ରୟୋଗ କରି ସେମାନେ ଶୀଘ୍ର ହେଉ ବା ବିଳମ୍ବରେ, ଅସଂଖ୍ୟ ଭକ୍ତଙ୍କ ପ୍ରିୟଭାଜନ ଓ ଶ୍ରଦ୍ଧାର ପାତ୍ର ବନିଯାଆନ୍ତି ।

ସନ୍ୟାସୀ ବୋଲି ସମାଜରେ ଥରେ ପରିଚିତ ହୋଇଯିବା ପରେ, ସେମାନଙ୍କୁ ଦୈହିକ ପରିଶ୍ରମ କରି ଖାଦ୍ୟ, ବସ୍ତ୍ର ଓ ବାସସ୍ଥାନ ଯୋଗାଡ଼ କରିବା ଆବଶ୍ୟକ ପଡେ ନାହିଁ । ଅନ୍ୟ ଲୋକମାନେ ନିଜର ଝାଳବୁହା ଅର୍ଜିତ ଧନ ଦାନ କରି, ସେମାନଙ୍କପାଇଁ ସମସ୍ତ ବ୍ୟବସ୍ଥା କରିଥାନ୍ତି ।

ଏଇଠି ପ୍ରଶ୍ନ ଉଠୁଛି - ପୂଜା ଅର୍ଚ୍ଚନା, କାମ କରିବାପାଇଁ ଜନତା କୃତଜ୍ଞତା ପ୍ରଦର୍ଶନ କରିବ କାହିଁକି ? ଏହା କୌଣସି ସାମାଜିକ କିମ୍ବା ରାଷ୍ଟ୍ରୀୟ ସେବା କର୍ମ ତ ନୁହେଁ । ତଥାକଥିତ ଈଶ୍ୱରଙ୍କୁ ବିଶ୍ୱାସ କରିବା ଏବଂ ତାଙ୍କର ପୂଜା ଅର୍ଚ୍ଚନା କରିବା ହେଉଛି ଏକ ବ୍ୟକ୍ତିଗତ ବ୍ୟାପାର । ଯେଉଁ ବ୍ୟକ୍ତି ନିଜର ମୋକ୍ଷ ପ୍ରାପ୍ତିପାଇଁ ସମାଜର କର୍ତ୍ତବ୍ୟକୁ ତ୍ୟାଗ କରି, ସନ୍ୟାସ ମାର୍ଗରେ ଯିବାକୁ ପସନ୍ଦ କରିଛି, ତାଙ୍କପାଇଁ ଆମେ ତ୍ୟାଗ କରିବା କାହିଁକି ? ସେମାନଙ୍କୁ ଆମେ ପଳାୟନବାଦୀ ବୋଲି କହିଲେ, ଭୁଲ ହେବ କାହିଁକି ? ଯେଉଁମାନେ ସନ୍ୟାସକୁ ପଳାୟନବାଦ କହିଲେ, ପ୍ରତିବାଦ କରନ୍ତି, ସେମାନେ ଥରେ ଚିନ୍ତା କରି କୁହନ୍ତୁ - ତ୍ୟାଗର ବାହାନା କରି

ସେମାନେ କ'ଣ ପ୍ରମାଣିତ କରିବାକୁ ଚାହାନ୍ତି ? ପରିବାର ଓ ସମାଜରୁ ଅଲଗା ହୋଇ, ଏକ ବିଶେଷ ଧରଣର ବେଶଭୂଷାରେ, ନିଜକୁ ସଜେଇ ସନ୍ୟାସୀ ହୋଇଯିବା, କ'ଣ ନିଜର କର୍ତ୍ତବ୍ୟ ଓ ଉତରଦାୟିତ୍ୱରୁ ଓହରି ଯିବା ଭଳି ଠକାମୀ ନୁହେଁକି ?

ଏଇଠି ଆଉ ଗୋଟିଏକଥା ଆମେ ଉଲ୍ଲେଖ କରିବା ଉଚିତ ଭାବୁଛୁ - ଯେଉଁମାନଙ୍କର ସ୍ୱାଭିମାନ ନଷ୍ଟ ହୋଇଯାଏ, ସେମାନଙ୍କର ସଂଘର୍ଷ କରିବା କ୍ଷମତା ମଧ୍ୟ ସେହି ଅନୁପାତରେ କମ ହୋଇଯାଏ । ସେମାନେ ଶେଷରେ ନିଜକୁ ବଞ୍ଚେଇ ରଖିବାପାଇଁ, ତଥାକଥିତ ସନ୍ୟାସ ଗ୍ରହଣ କରିଥାନ୍ତି । ସ୍କୁଲରେ ପାଠପଢୁଥିବା ବୁଦ୍ଧିମାନ ଛାତ୍ରଟିଏ, କେବେ ବି ପଳାୟନବାଦୀ ବିଚାରକୁ ସମର୍ଥନ କରିନଥାଏ । କାରଣ ତା'ର ସ୍ୱାଭିମାନ ତାକୁ ସେଭଳି ବିଚାରରୁ ଦୂରେଇ ରଖିଥାଏ । ସେ ସଂଘର୍ଷକୁ ଜୀବନର ମୂଳରୂପେ ସ୍ୱୀକାର କରି ପରିଶ୍ରମ କରେ । ଶେଷରେ ସେ ସମାଜରେ ଏକ ବିଶିଷ୍ଟ ବୁଦ୍ଧିଜୀବୀ ବ୍ୟକ୍ତି ହିସାବରେ ପ୍ରତିଷ୍ଠା ଲାଭ କରେ । ସମାଜ ଏବଂ ରାଷ୍ଟ୍ର ସେହିଭଳି ବ୍ୟକ୍ତିଙ୍କ ପାଖରେ କୃତଜ୍ଞ ରହେ, ସମ୍ମାନ ଦିଏ ଏବଂ ଗୁଣଗାନ କରେ । କାରଣ ସେ ନିଜର ଜ୍ଞାନକୁ ସମାଜର ଓ ରାଷ୍ଟ୍ରପାଇଁ କିଛି ଲାଭଜନକ କାମରେ ବିନିଯୋଗ କରିଥାଏ । ସମାଜ ପ୍ରତ୍ୟକ୍ଷ ଭାବେ ଉପକୃତ ହୋଇଥିବାରୁ ବ୍ୟକ୍ତିଙ୍କୁ ସମ୍ମାନ ପ୍ରଦର୍ଶନ ପୂର୍ବକ ଗୁଣଗାନ କରିଥାଏ ।

ତଥାକଥିତ ସନ୍ୟାସ ଗ୍ରହଣ କରିବା ପଛରେ ଆହୁରି ଅନେକ କାରଣ ଅଛି । ଜଣେ ଯେଉଁ ଗୃହସ୍ଥ ବ୍ୟକ୍ତି ନିଜର ଓ ପରିବାରର ସମସ୍ୟା ଗୁଡିକୁ ସମାଧାନ କରିବା ରାସ୍ତା ନପାଇ, ବିରକ୍ତ ହୋଇ ସନ୍ୟାସୀ ହେବାକୁ ସହଜ ଭାବନ୍ତି, ସେମାନଙ୍କ ପାଇଁ ସମାଜ ଦୟା କରିବ କାହିଁକି ? ମଜା କଥା ହେଉଛି ଯେ ସମସ୍ତ ସନ୍ୟାସୀ ଗୃହ ତ୍ୟାଗ କରି, ବଣ ଜଙ୍ଗଲକୁ ନଯାଇ, ନିଜର ସୁରକ୍ଷା ଦୃଷ୍ଟିରୁ ସମାଜରେ ହିଁ ରହନ୍ତି । ଯଦି ସେମାନଙ୍କ କହିବା ଅନୁସାରେ, ମୂଳ ଉଦ୍ଦେଶ୍ୟ ତଥାକଥିତ ଈଶ୍ୱର ପ୍ରାପ୍ତି ବା ମୋକ୍ଷ ପ୍ରାପ୍ତି ହୋଇଥାନ୍ତା, ତେବେ ସେମାନେ, ଏହି ଲୋକାରଣ୍ୟ ତ୍ୟାଗ କରି, ପ୍ରାକୃତିକ ଅରଣ୍ୟକୁ ଚାଲି ଯାଆନ୍ତେ ।

ସମାଜରେ ରହିବା ପଛରେ ସେମାନେ କାରଣ ଦର୍ଶାନ୍ତି - "ଆମେ ପ୍ରତ୍ୟେକ ପ୍ରାଣୀର କଲ୍ୟାଣ କରିବାପାଇଁ ସମାଜରେ ରହିଛୁ ।"

ଅସଲ କଥା ସେମାନେ ଜାଣନ୍ତି - ଜଙ୍ଗଲକୁ ଗଲେ ସୁସ୍ୱାଦୁ ଖାଦ୍ୟ, ରହିବାକୁ ଶୀତତାପ ନିୟନ୍ତ୍ରିତ ମଠ ବା ଆଶ୍ରମ, ଯାତାୟାତ କରିବାପାଇଁ ଯାନବାହାନ ଏବଂ ସେବା

କରିବାପାଇଁ ସୁନ୍ଦରୀ ଶିଷ୍ୟା ମିଳିବେ ନାହିଁ । ପ୍ରତିଦିନ ହଜାର ହଜାର ଭଦ୍ରଲୋକ ଆସି ପାଦ ଛୁଇଁ ପ୍ରଣାମ କରିବାର ମାନସିକ ତୃପ୍ତି ବି ଜଙ୍ଗଲରେ କାହୁଁ ମିଳିବ ? ନିଜର ପ୍ରବଚନକୁ ପ୍ରଚାର କରିବାପାଇଁ ଟିଭି ଗଣମାଧ୍ୟମ ଓ ସମର୍ଥକମାନଙ୍କ ସହ ସମ୍ପର୍କ ସ୍ଥାପନପାଇଁ ମୋବାଇଲ ଫୋନର ସୁବିଧା ଜଙ୍ଗଲରେ କାହୁଁ ପାଇବେ ? ସବୁଠାରୁ ବଡ କଥା ହେଉଛି - ସମର୍ଥକମାନେ ଦାନ ଦେବାପାଇଁ ଜଙ୍ଗଲକୁ ଯିବେ କାହିଁକି ?

ଆମର ସମ୍ବିଧାନ ସମସ୍ତଙ୍କୁ ନିଜର ବିଚାର ପ୍ରକଟ କରିବାର ଅଧିକାର ଦେଇଛି, କିନ୍ତୁ ନିଜର ବିଚାରକୁ ମାନିବାପାଇଁ ଅନ୍ୟକୁ ବାଧ୍ୟ କରିବା ଅଧିକାର ଦେଇନାହିଁ । ଦୁଃଖର କଥା ଯେ, ଧର୍ମ ହିଁ ଏହି କାମ ବଡ଼ ସହଜରେ କରିପାରୁଛି, କିନ୍ତୁ କେହି ଧର୍ମକୁ ଦୋଷ ଦେଇପାରିବେନି । ଆମ ଦେଶର ଧର୍ମ ବି ଏକ ନାହିଁ । ଅନେକ ଧର୍ମ ଅଛି ଏବଂ ସେମାନଙ୍କ ଭିତରେ ବି ଅନେକ ମତଭେଦ ରହିଛି । ଯାହାଫଳରେ ପ୍ରତି ମୁହୂର୍ତ୍ତରେ ନିଜକୁ ଶ୍ରେଷ୍ଠ ପ୍ରମାଣିତ କରିବାପାଇଁ, ପ୍ରତିସ୍ପର୍ଦ୍ଧା ଓ ହିଂସା ଲାଗି ରହୁଛି । ପ୍ରତ୍ୟେକ ଧର୍ମର ଅନେକ ସମ୍ପ୍ରଦାୟକୁ, ସମର୍ଥନ କରୁଥିବା ଅନେକ ବ୍ୟକ୍ତି ରହିଛନ୍ତି । ଏହିସବୁ କାମ ହେଉଛି, ସେହି ସଂସାର ତ୍ୟାଗୀ ଭଣ୍ଡ ସନ୍ନ୍ୟାସୀମାନଙ୍କର । ନିଜେ ଯେଉଁ ମତ ବା ବିଚାରଧାରାକୁ ସ୍ୱୀକାର କରନ୍ତି, ସେହି ମତକୁ ମନେଇ କିଛି ସମର୍ଥକ ଯୋଗାଡ଼ କରିଦିଅନ୍ତି । କିଛିଦିନ ପରେ ଏକ ନୂତନ ଧାର୍ମିକ ଗୋଷ୍ଠୀର ଜନ୍ମ ହୋଇଯାଉଛି । ସେଥିପାଇଁ ତଥାକଥିତ ଈଶ୍ୱର ଓ ଧର୍ମକୁ ନେଇ 'ନାନା ମୁନିଙ୍କ ନାନା ମତ' ପ୍ରବାଦଟି ଖୁବ ପ୍ରଚଳିତ ।

ସେହି ସନ୍ନ୍ୟାସୀମାନେ ନିଜର ସୁରକ୍ଷା ଓ ସ୍ୱାର୍ଥ ରକ୍ଷାପାଇଁ ଚାହୁଁଛନ୍ତି - ସେମାନଙ୍କ ଉପରେ କୌଣସି ତର୍କ ବିତର୍କ ନହେଉ । ସେମାନଙ୍କର ଅନ୍ଧଭକ୍ତ ସମର୍ଥକ ମଧ୍ୟ ଚାହୁଁଛନ୍ତି - ସନ୍ନ୍ୟାସୀମାନଙ୍କ ଉପରେ ଆଖି ଓ ମସ୍ତିଷ୍କକୁ ବନ୍ଦ ରଖି କେବଳ ବିଶ୍ୱାସ ରଖିବା ଉଚିତ । ତେବେ ହିଁ ଆମ ସମ୍ପ୍ରଦାୟର ମହତ୍ୱ ବଞ୍ଚି ରହିବ ।

ସନ୍ନ୍ୟାସୀମାନେ ବିନା ପରିଶ୍ରମରେ ଖାଦ୍ୟ ଖାଉଥିବା କଥାକୁ ବିରୋଧ କରି ଜଣେ ବନ୍ଧୁ କହିଲେ - "ସେମାନେ ଯୋଗ, ତପ ଓ ସାଧନା କରିବାପାଇଁ ବିଭିନ୍ନ ଶାରୀରିକ କଷ୍ଟ ଭୋଗ କରୁଛନ୍ତି । ଆପଣ କିଛି ଦିନ ସେମାନଙ୍କ ଭଳି ସନ୍ନ୍ୟାସୀ ଜୀବନ ବିତେଇଲେ ବୁଝି ପାରିବେ ଯେ ସନ୍ନ୍ୟାସୀ ଜୀବନ କେତେ କଷ୍ଟକର ?

ମୁଁ କହିଲି - ଆପଣଙ୍କୁ କେମିତି ଜଣାପଡିଲା, ସେମାନଙ୍କ ଜୀବନ ଅତି କଷ୍ଟକର ? ଆପଣ କ'ଣ କିଛିଦିନ ସନ୍ୟାସୀ ଜୀବନ ଅନୁଭବ କରିଛନ୍ତି ? ସେ କହିଲେ - ମୁଁ ନିଜେ ଅନୁଭବ କରିନାହିଁ କିନ୍ତୁ ପିଲାଟି ବେଳୁ ଶୁଣି ଆସିଛି ଯେ, ସନ୍ୟାସୀ ଜୀବନ ବହୁତ କଠିନ । ମୁଁ କହିଲି - ପ୍ରଥମ କଥା ହେଲା ଶରୀରକୁ କଷ୍ଟ ଦେଇ ତପ ବା ସାଧନା କରିବା କର୍ମକୁ ଆମେ ଏକ ବିଦ୍ୱାନ କର୍ମ ବୋଲି ମାନିବା କାହିଁକି ? ସମାଜର ପରୋକ୍ଷ ବା ପ୍ରତ୍ୟକ୍ଷ ଭାବେ କିଛି ଫାଇଦା ହେବା ତ ଦେଖା ଯାଉନି ।

ସେହି ସନ୍ୟାସୀମାନଙ୍କ ଶାରୀରିକ କୃଚ୍ଛ୍ର ସାଧନାକୁ ହଠଯୋଗ ବୋଲି କୁହାଯାଏ । ଏହା ସେମାନଙ୍କ ସମର୍ଥକମାନଙ୍କୁ ପ୍ରଭାବିତ କରିବାପାଇଁ ଏବଂ ନିଜକୁ ଏକ ବିଶିଷ୍ଟ ବ୍ୟକ୍ତି ରୂପେ ସ୍ଥାପିତ କରିବାପାଇଁ ନିୟମିତ ଅଭ୍ୟାସ କରିଥା'ନ୍ତି । ଏହି ସାଧନା ସମସ୍ତ ସନ୍ୟାସୀ ବା ଯୋଗୀ ଅଭ୍ୟାସ କରୁଥିବା ଦେଖା ଯାଉନି । କାରଣ ସେମାନଙ୍କ ଭିତରୁ ଅଧିକାଂଶ ହେଉଛନ୍ତି ଅଳସୁଆ ।

ଶରୀରର ବିଭିନ୍ନ ଅଙ୍ଗକୁ ବିଚିତ୍ର ଭାବେ ପରିଚାଳିତ କରି ଦର୍ଶକମାନଙ୍କୁ ଚମତ୍କୃତ କରି ପାରୁଥିବା ସର୍କସର କଳାକାରମାନେ ସନ୍ୟାସୀମାନଙ୍କ ଅପେକ୍ଷା ବେଶୀ ପରିଶ୍ରମ କରିଥାନ୍ତି । ଆଜିକାଲି ଟିଭି ଚ୍ୟାନେଲମାନଙ୍କରେ ରିଏଲିଟି ଦୃଶ୍ୟରେ କିଛି କଳାକାର ଅଦ୍ଭୁତ କଳା ପ୍ରଦର୍ଶନ କରୁଛନ୍ତି । ସେହି କଳାକାରମାନେ ସମାଜର ମନୋରଞ୍ଜନ ପାଇଁ ଏହା କରୁଛନ୍ତି । ସେମାନଙ୍କର ଅଦ୍ଭୁତ ପ୍ରତିଭା ପାଇଁ ଆମେ ପ୍ରଶଂସା କରୁଛୁ ଓ ସମ୍ମାନିତ କରୁଛୁ । ସେମାନଙ୍କୁ କ'ଣ ଆମେ ସନ୍ୟାସୀ ଭାବି ପୂଜା କରିବା ଉଚିତ ?

ସନ୍ୟାସ ଜୀବନର ଅନୁଭବପାଇଁ ମୁଁ ସନ୍ୟାସୀ ହେବା ଆବଶ୍ୟକ ନାହିଁ । କାରଣ ମୋର ସ୍ୱାଭିମାନ ଅଛି । ସତ କଥା ହେଉଛି - ଧର୍ମ ଓ ସନ୍ୟାସୀମାନଙ୍କ ନିର୍ଦ୍ଦେଶ ଅନୁସାରେ ଜୀବନ ଯାପନ କରିବା ଠାରୁ ବଡ଼ ଗୋଲାମୀ ଆଉ କିଛି ନାହିଁ । ଯଦି ଆପଣଙ୍କର ଖାଇବା, ପିଇବା, ଉଠିବା, ବସିବା, ଚାଲିବା ଏପରିକି ଯୌନ ସମ୍ପର୍କ ସ୍ଥାପନ କରିବା ଭଳି ସମସ୍ତ କର୍ମ କେବଳ ଧର୍ମ ହିଁ ନିର୍ଦ୍ଧାରଣ କରିବ, ତେବେ ଆପଣଙ୍କର ଅସ୍ତିତ୍ୱ ଓ ବ୍ୟକ୍ତିତ୍ୱ ରହିଲା କେଉଁଠି ? ଆପଣଙ୍କ ଜ୍ଞାନ, ବୁଦ୍ଧି ଓ ପ୍ରତିଭା ସବୁକିଛି ବେକାର । ଆପଣ ତ ଅନ୍ୟର ଦୟାର ପାତ୍ର ହୋଇ ଜୀବନ କାଟିବେ । ଏହା ଗୋଲାମୀ ନୁହଁ ତ ଆଉ କ'ଣ ? ସେଇଠି ସ୍ୱାଭିମାନ ଆହତ ହୋଇଥାଏ ।

********

# ଜୀବନର ଉତ୍ପତ୍ତି ଏବଂ ବିକାଶ

ଆସ୍ତିକମାନଙ୍କର ବିଶ୍ୱାସ ଯେ ତଥାକଥିତ ପରମାତ୍ମା, ନିଜର କାରଖାନାରେ କୋଟି କୋଟି ଆତ୍ମା ତିଆରି କରୁଛନ୍ତି ଏବଂ ସେଗୁଡିକ ପ୍ରାଣୀର ଶରୀରରେ ଥିବା ଗର୍ଭକୁ ପଠେଇ, ଜୀବନର ଉତ୍ପତ୍ତି କରୁଛନ୍ତି । ସୂକ୍ଷ୍ମ ଜୀବାଣୁ ଠାରୁ ଆରମ୍ଭ କରି, ହାତୀ ଓ ଡାଏନାସୋର ଭଳି ବିଶାଳକାୟ ପ୍ରାଣୀ ପର୍ଯ୍ୟନ୍ତ, ଉତ୍ପତ୍ତି, ପାଳନ ପୋଷଣ, ବିକାଶ ଏବଂ ବିନାଶ ସବୁକିଛି ତଥାକଥିତ ପରମାତ୍ମାଙ୍କ କମ୍ପ୍ୟୁଟର ଦ୍ୱାରା ନିୟନ୍ତ୍ରିତ ହେଉଛି ।

ଆମର ପୂର୍ବଜମାନେ ତ୍ରିକାଳଦର୍ଶୀ ଥିଲେ ବୋଲି ଦାବି କରୁଥିଲେ ମଧ୍ୟ 'ଚାର୍ବାକ' 2500 ବର୍ଷ ପୂର୍ବରୁ ଅନୁସନ୍ଧାନ କରି ଯାହା କହିଥିଲେ, ଆଜିର ବୈଜ୍ଞାନିକମାନେ ଗବେଷଣା କରି ତାହା ସିଦ୍ଧ କରି ଦେଇଛନ୍ତି ଯେ ଜୀବର ଉତ୍ପତ୍ତି ଭୌତିକ ପଦାର୍ଥମାନଙ୍କ ରାସାୟନିକ ପରିବର୍ତ୍ତନ ଯୋଗୁଁ ହିଁ ସମ୍ଭବ ହୋଇଛି ।

ମହର୍ଷି ଦୟାନନ୍ଦ ତିନୋଟି ପଦାର୍ଥକୁ ଶାଶ୍ୱତ ବୋଲି ମାନିଛନ୍ତି । 1. ପ୍ରକୃତି, 2.ଜୀବ (ଆତ୍ମା), 3. ପରମାତ୍ମା । ଈଶ୍ୱର ହିଁ ଜୀବନ ଓ ପ୍ରକୃତିର ସଞ୍ଚାଳନ କରୁଛନ୍ତି । ମହର୍ଷି 'ସତ୍ୟାର୍ଥ ପ୍ରକାଶ'ର ଅଷ୍ଟମ ଅଧ୍ୟାୟରେ କହିଛନ୍ତି - "ପୃଥିବୀରେ ସୃଷ୍ଟିର ଆରମ୍ଭରେ ପରମେଶ୍ୱର ବିନା ସଂଯୋଗ କ୍ରିୟାରେ, କିଛି ଯୁବକ ଓ ଯୁବତୀଙ୍କୁ ତିଆରି କରିଥିଲେ ।" ସୃଷ୍ଟିର ଆରମ୍ଭ ବିଷୟରେ ସେ ସଠିକ ଭାବେ କିଛି କହିନାହାନ୍ତି । କେବଳ ଅନୁମାନକରି କହିଛନ୍ତି - "ଯେଉଁ ଭଳି ଦିନ ପଛରେ ରାତି ଆସେ, ସେହିଭଳି ଏହି ଚକ୍ର ଚାଲିଥାଏ । ପୂର୍ବ ଜନ୍ମର କର୍ମ ଅନୁସାରେ ଏହି ଜନ୍ମର ଜୀବ ଭିତରେ ବିବିଧତା ଦେଖାଯାଏ ।" ଏଇଠି ପ୍ରଶ୍ନ ଉଠୁଛି - ସୃଷ୍ଟିର ପ୍ରାରମ୍ଭ କ'ଣ ବିନା କର୍ମରେ ହୋଇଛି ? ମହର୍ଷିଙ୍କ ପାଖରେ ଏହାର କୌଣସି ଉତ୍ତର ନାହିଁ ।

ମହର୍ଷି ଦୟାନନ୍ଦ ବେଦଗୁଡିକୁ ଭଲକରି ପଢି, ବୁଝି ପାରିଥିବା ଦାବି କରିଛନ୍ତି । ବେଦରେ ଉଡ଼ାଜାହାଜ, ଟେଲିଫୋନ, ଟେଲିଭିଜନ ଆଦିର ବୈଜ୍ଞାନିକ ଜ୍ଞାନ ଖୋଜି ପାଇଥିବା ବି ସ୍ୱୀକାର କରିଛନ୍ତି । ତଥାପି ତାଙ୍କର ସମସ୍ତ ଯୋଗ ସାଧନା, ବ୍ରହ୍ମଚର୍ଯ୍ୟ, ଧ୍ୟାନ ଓ ଜ୍ଞାନ ବ୍ରହ୍ମାଣ୍ଡର ବାସ୍ତବିକ ବୈଜ୍ଞାନିକ ଜ୍ଞାନ ପ୍ରାପ୍ତ କରାଇପାରିଲା ନାହିଁ । କାରଣ ବ୍ରହ୍ମାଣ୍ଡର ଜ୍ଞାନ ଆଖି ବନ୍ଦକରି ଧ୍ୟାନ କଲେ ମିଳେନାହିଁ । ଆଖି ଖୋଲି ବର୍ଷ ବର୍ଷ ଧରି ଅନୁସନ୍ଧାନ ଓ ଗବେଷଣା ମୂଳକ କଠିନ ପରିଶ୍ରମ କଲେ ହିଁ, ଅସଲ ଜ୍ଞାନ ପ୍ରାପ୍ତ ହୁଏ । ମହର୍ଷି ଦୟାନନ୍ଦଙ୍କ ମତରେ

"ପୃଥିବୀ, ଜଳ, ଅଗ୍ନି, ବାୟୁ, ଆକାଶ, ସୂର୍ଯ୍ୟ, ତାରା ଓ ଚନ୍ଦ୍ର ଆଦି 'ବାସୁ' ନାମରେ ଖ୍ୟାତ । କାରଣ ଏମାନଙ୍କ ଭିତରେ ପଦାର୍ଥ ଏବଂ ପ୍ରଜା ବାସକରନ୍ତି । ବସ୍ତୁର ନିବାସ କରିବା ଜାଗା ହେଉଛି ଗୃହ । ସେଥିପାଇଁ ଏମାନଙ୍କର ନାମ ହେଉଛି 'ବାସୁ' । ପୃଥିବୀ ଭଳି ଚାନ୍ଦ, ସୂର୍ଯ୍ୟ ଓ ନକ୍ଷତ୍ର ମଧ୍ୟ 'ବାସୁ' ।"

ଏଇଠି ପ୍ରଶ୍ନ ଉଠୁଛି - ଯଦି ସମସ୍ତ ଗ୍ରହ ଓ ନକ୍ଷତ୍ର ମଧ୍ୟ ପୃଥିବୀ ଭଳି 'ବାସୁ' ତେବେ ସେଠାରେ ମଧ୍ୟ ପ୍ରଜା (ମଣିଷ ଓ ଅନ୍ୟ ଜୀବ) ରହିବା ସମ୍ଭବ ନୁହେଁକି ? ମହର୍ଷି କ'ଣ ଜାଣି ନଥିଲେ କି ସୂର୍ଯ୍ୟ ଓ ନକ୍ଷତ୍ର ଗୁଡିକ ହେଉଛି ଗୋଟିଏ ଲେଖାଏଁ ଅଗ୍ନି ପିଣ୍ଡ ? ସେଠାରେ କୌଣସି ଜୀବ ରହିପାରିବ କିପରି ? ଗତ ଶତାବ୍ଦୀରେ ଆମେରିକା, ଋଷିଆ ଓ ଭାରତୀୟ ବୈଜ୍ଞାନିକମାନେ ଚନ୍ଦ୍ରପୃଷ୍ଠରେ ଅବତରଣ କରି ଗବେଷଣା କରିଥିଲେ । ସେମାନେ କେହି ତ ମହର୍ଷିଙ୍କ ପ୍ରଜାଙ୍କୁ ବା ଜୀବଙ୍କୁ ଚନ୍ଦ୍ରପୃଷ୍ଠରେ ଦେଖିବାକୁ ପାଇ ନଥିଲେ । ଜଳ, ବାୟୁ ନଥିବା ଗ୍ରହ ଏବଂ ଅଗ୍ନି ପିଣ୍ଡମାନଙ୍କରେ ଜୀବ ବାସ କରିବାକଥା କହି, ମହର୍ଷି ଦୟାନନ୍ଦ କ'ଣ ପ୍ରମାଣ କରିବାକୁ ଚାହୁଁଥିଲେ ?

ବାଇବେଲରେ ସୃଷ୍ଟିର ରଚନା ସମ୍ପର୍କରେ ଲେଖା ଅଛି - "ଈଶ୍ୱର ପ୍ରଥମ ଦିନ (ହୁଏତ ସୋମବାର) ସକାଳେ ସୃଷ୍ଟିର ଜୀବ, ଜନ୍ତୁ, ପାଣି, ବାୟୁ ଆଦି କ୍ରମାନ୍ୱରେ ତିଆରି କରି କରି, ଚତୁର୍ଥ ଦିନରେ ଆଲୋକ ତିଆରି କରିଥିବା କଥା ଲେଖାଅଛି । (ସେଥିପାଇଁ ପ୍ରଶ୍ନ ବି ଉଠିଛି - "ଯଦି ଚତୁର୍ଥ ଦିନ ସୂର୍ଯ୍ୟ ଓ ଆଲୋକ ତିଆରି ହୋଇଥିବାରୁ, ଦିନ ଓ ରାତି ହେଲା ତେବେ, ପୂର୍ବର ତିନି ଦିନର ଗଣନା କିପରି ହେଲା ?) ଏହିପରି ଛ' ଦିନରେ ବିଶ୍ୱକୁ ସୃଷ୍ଟି କରି ସାରି, ଈଶ୍ୱର ସପ୍ତମ ଦିନ (ରବିବାର) ଆରାମ କରିବାପାଇଁ ଶୋଇ ପଡିଲେ । ସେଥିପାଇଁ ବାଇବେଲରେ ରବିବାର ଦିନଟି ପବିତ୍ର ଦିବସ-ବୋଲି ଘୋଷଣା କରାଗଲା ।

ଚାର୍ଲସ ଡାର୍ବୀନ 1931 ରୁ 1936 ମସିହାରେ 'ବିଗଲ' ପାଣିଜାହାଜରେ, ସମୁଦ୍ରରେ ଯାତ୍ରା କରି,ବିଭିନ୍ନ ଦେଶ ଭ୍ରମଣ କରି, ଜୀବ, ବୃକ୍ଷ ଆଦି ଜୀବିତ ଓ ମୃତ ଶରୀରମାନଙ୍କ ଅଂଶ ଏକତ୍ରିତ କଲେ । ଦୀର୍ଘ 20 ବର୍ଷ ଧରି, ସେଗୁଡିକ ଉପରେ ବୈଜ୍ଞାନିକ ଅନୁସନ୍ଧାନ କରିବା ପରେ 'ଜୀବମାନଙ୍କ ଉତ୍ପତ୍ତି' ନାମକ ପୁସ୍ତକ ରଚନା କଲେ । ସେଥିରେ ସେ ଲେଖିଛନ୍ତି - ହଠାତ ରାସାୟନିକ ପ୍ରକ୍ରିୟାର ବିକାଶ ଘଟିବା ଫଳରେ ଜୀବନର ଉତ୍ପତ୍ତି ହୋଇଛି ଏବଂ ଧିରେ ଧିରେ ଏହାର ବିକାଶ ବି ହୋଇଛି । ମଣିଷର ପୂର୍ବଜମାନେ, ମାଙ୍କଡମାନଙ୍କ ସହ ମିଶୁଥିବା

ଏକ ଜାତି 'ହୋମୋସେପିୟଂଶ' ର ସନ୍ତାନ ଅଟନ୍ତି । ଜଳରେ ଉତ୍ପନ୍ନ ହୋଇଥିବା ଏକକୋଷିୟ ଜୀବର ବିକାଶ ଏବଂ ବାତାବରଣରେ କୋଟି କୋଟି ବର୍ଷ ଧରି ଘଟିଥିବା ପରିବର୍ତ୍ତନ ସ୍ୱରୂପ, ମାନବ ଜାତିର ଉତ୍ପନ୍ନ ହୋଇଛି । ଡାର୍ବୀନଙ୍କ ଏହି ଥିଓରୀ ପ୍ରକାଶ ପାଇବା ପରେ, ଆଧ୍ୟାତ୍ମିକ ଗୁରୁ ଓ ଜନତାଙ୍କ ମନରେ ତୁମୁଳ କ୍ରୋଧ ଜାତହେଲା । ସେମାନଙ୍କର ପ୍ରତିବାଦ ଯୋଗୁଁ, ତାଙ୍କର ଏହି ପୁସ୍ତକ ଉପରେ ୟୁରୋପର କିଛି ଦେଶ ପ୍ରତିବନ୍ଧ ଲଗେଇ ଦେଲେ । ଡାର୍ବୀନଙ୍କୁ ଧର୍ମଗୁରୁମାନେ ନାସ୍ତିକ କହି, ଅପମାନିତ କଲେ । ବାଇବେଲରେ ଯାହା ଲେଖା ଅଛି, ତାହା କେବେ ବି ଅସତ୍ୟ ହୋଇପାରିବ ନାହିଁ ବୋଲି ଦାବି କରିଥିଲେ ।

ସମୟ ବଦଳିଲା । ସତ୍ୟକୁ ଜବରଦସ୍ତି ଅସ୍ୱୀକାର କରାଯାଇପାରେ କିନ୍ତୁ ସତ୍ୟକୁ ନଷ୍ଟ କରା ଯାଇପାରିବନାହିଁ । ପରବର୍ତ୍ତୀ କାଳରେ, ସେହି ପଶ୍ଚିମ ଦେଶମାନଙ୍କର ପ୍ରସିଦ୍ଧ ଚର୍ଚ୍ଚମାନଙ୍କରେ ବସିଥିବା ଉଚ୍ଚପାଦ୍ୟାର ଧର୍ମଗୁରୁମାନେ ହିଁ ସତ୍ୟକୁ ସ୍ୱୀକାର କରିଛନ୍ତି । ବିଗତ ଦିନମାନଙ୍କରେ ମହାନ ବୈଜ୍ଞାନିକ ଗ୍ୟାଲିଲିଓ, ବ୍ରୁନୋ, କୋପାରନିକାସ ଏବଂ ଡାର୍ବୀନଙ୍କ ପ୍ରତି ହୋଇଥିବା, ଅମାନବୀୟ କର୍ମପାଇଁ କ୍ଷମାପ୍ରାର୍ଥନା ମଧ୍ୟ କରିଛନ୍ତି ।

ଆମ ଦେଶରେ ବି ଅନେକ ବୁଦ୍ଧିବାଦୀ ଓ ହେତୁବାଦୀ ମହାପୁରୁଷ ସମାଜକୁ, ଧର୍ମର ଜାଲରୁ ଉଦ୍ଧାର କରି ବୈଜ୍ଞାନିକ ଭିତ୍ତି ଭୂମିରେ, ମୁକ୍ତ କରିବାକୁ ପ୍ରୟାସ କରିଥିଲେ । କିନ୍ତୁ ମୌଳବାଦୀ ସଙ୍ଗଠନମାନଙ୍କ ସହ ଲଢେଇ କରି ଜିତିବା ସମ୍ଭବ ନଥିଲା । ସେଥିପାଇଁ ଚାର୍ବାକ, ଗୌତମ ବୁଦ୍ଧ, ମହାବୀର, ଧର୍ମକୀର୍ତ୍ତି, ଅଶ୍ୱଘୋଷ, ଜ୍ୟୋତିରାଓ ଫୁଲେ, ଡା.ଆବ୍ରାହାମ କୋଭୁର, ଗୋରା ଓ ବାସବା ପ୍ରେମାନନ୍ଦ, ଆପ୍ରାଣ ଚେଷ୍ଟା କରି ମଧ୍ୟ ସଂଖ୍ୟାଧିକ ସମର୍ଥକ ଜୁଟାଇ ପାରିଲେ ନାହିଁ । ଆଜିର ସମାଜରେ କିନ୍ତୁ ଲୋକମାନଙ୍କ ଭିତରେ ଭାବାନ୍ତର ସୃଷ୍ଟି ହୋଇଥିବା ଆମେ ଲକ୍ଷ୍ୟ କରି ପାରିବା । ସମସ୍ତେ ନିଜର ଜୀବିକା ଅନୁସାରେ, ଜୀବନଶୈଳୀରେ ପରିବର୍ତ୍ତନ କରିପାରୁଛନ୍ତି । ନିଜର ପ୍ରାଥମିକ ଜୀବନରେ, ପାଳନ କରୁଥିବା କେତେକ ଧାର୍ମିକ କର୍ମ କାଣ୍ଡକୁ, ନିଜର ଦୈନନ୍ଦିନ ଜୀବନରୁ, ଛଟେଇ କରି ସାରିଲେଣି । ଏହା ନକଲେ ପାପ ହେବ କିମ୍ବା ବ୍ରତ ଉପବାସ ନକଲେ ଅନିଷ୍ଟ ହେବାର ଅହେତୁକ ଭୟ, ସେମାନଙ୍କ ମନରୁ ଦୂର ହେଲାଣି ।

ହେତୁବାଦର ନୂତନ ବିଚାରଧାରାକୁ, ସମାଜ ସହିତ ଯୋଡ଼ିବାପାଇଁ ଯେବେ ବି କୌଣସି ବିଦ୍ୱାନ ପ୍ରୟାସ କରିଛନ୍ତି, ତାଙ୍କୁ ବିରୋଧ କରି ଅନେକ ଯନ୍ତ୍ରଣା ଦିଆଯାଇଛି ।

ସେମାନଙ୍କର ବିଚାର ସମ୍ବଳିତ ପୁସ୍ତକଗୁଡିକୁ ଜାଳି ପୋଡି ନଷ୍ଟ କରି ଦିଆଯାଇଛି । କିନ୍ତୁ ମାନବର ବୁଦ୍ଧି ଅନ୍ଧବିଶ୍ୱାସକୁ ଅସ୍ୱୀକାର କରି ଆଗକୁ ବଢିବାପାଇଁ ପ୍ରୋତ୍ସାହିତ କରିଥାଏ । ଦିନେ 'ଅରସ୍ତୁ' ଙ୍କ ଜ୍ଞାନ ୟୁନାନରୁ ମୁକ୍ତ ହୋଇ, ମହାନ ମୁସଲମାନ ଦାର୍ଶନିକ 'ଇବ୍ନରୋସଦ'ଙ୍କ ହାତରେ ପଡ଼ିଥିବାରୁ, ଆଧୁନିକ ୟୁରୋପର ଜନ୍ମ ହୋଇଥିଲା । ଯେଉଁ କ୍ରାନ୍ତି ଫଳରେ ଆଜି ସାରା ସଂସାର ସୁଖ, ଶାନ୍ତି ଓ ସମୃଦ୍ଧିର ସ୍ୱାଦ ପାଇପାରୁଛି ।

ଦିନକୁ ଦିନ ବିଜ୍ଞାନର ପ୍ରଗତି ଅଭୂତପୂର୍ବ ଭାବେ ବୃଦ୍ଧି ପାଇଥିବା ଏବଂ ଧର୍ମଗୁରୁମାନଙ୍କର ପୁରୁଣା ପ୍ରବଚନ ଆଉ ପ୍ରଭାବିତ କରିପାରୁ ନଥିବା ଅନୁଭବ କରି, ସେମାନେ ପୁରୁଣା ମଦକୁ ନୂଆ ବୋତଲରେ ପୂରେଇ ବିକ୍ରି କରିବା ଆରମ୍ଭ କରିଦେଲେଣି । ଅର୍ଥାତ ଧର୍ମଶାସ୍ତ୍ରରେ ଲେଖାଥିବା ସମସ୍ତ ତଥ୍ୟ ବିଜ୍ଞାନ ସମ୍ମତ ତଥ୍ୟ ବୋଲି ଦାବି କଲେଣି । ପୁରାଣ ଓ ଧର୍ମଶାସ୍ତ୍ରମାନଙ୍କର ସଂସ୍କୃତ ଶ୍ଳୋକକୁ ଟାଣି ଓଟାରି, ବିଭିନ୍ନ ଅର୍ଥରେ ବ୍ୟାଖ୍ୟା କରି ପ୍ରମାଣିତ କରିବାକୁ ସମସ୍ତେ ପ୍ରାଣ ପଣେ ଲାଗି ପଡିଛନ୍ତି । ସେମାନେ କହୁଛନ୍ତି - ଜମା ସନ୍ଦେହ କରନାହିଁ । ପୌରାଣିକ ତଥ୍ୟ ଗୁଡିକ ମଧ ଆଧୁନିକ ବିଜ୍ଞାନ ସମ୍ମତ ତଥ୍ୟ । ଏହା ଦ୍ୱାରା ଜନତାଙ୍କ ଶୋଷଣ କରିବା ପ୍ରଥା କ୍ରମାଗତ ଭାବେ ଚାଲୁ ରହିପାରିବ ବୋଲି ସେମାନେ ଭାବୁଛନ୍ତି ।

ଭାଇରସ ଏକ ଅଦ୍ଭୁତ ଜୀବ । ଭାଇରସ ଯେବେ କୌଣସି ଜୀବିତ ବୃକ୍ଷ କିମ୍ବା ପ୍ରାଣୀ ଦେହରେ ପ୍ରବେଶ କରେ, ସେ ଜୀବିତ ହୋଇ ନିଜେ ବଢିବା ଓ ତା'ର ବଂଶ ବୃଦ୍ଧି କରିବାରେ ସଫଳ ହୋଇଥାଏ । ଏହା ଯଦି ଜୀବିତ ଶରୀର ସମ୍ପର୍କରେ ନ ଆସେ, ତଥାପି ସେହି ଭାଇରସ ଲକ୍ଷ ଲକ୍ଷ ବର୍ଷ ଧରି ମୃତବତ ପଡି ରହିପାରେ । ସେଥିପାଇଁ ବିଜ୍ଞାନ ଭାଷାରେ ଭାଇରସକୁ ଜୀବିତ ଓ ମୃତ ଉଭୟ ଶ୍ରେଣୀରେ ଗଣନା କରାଯାଏ ।

ସଂସାରର ଅନ୍ୟାନ୍ୟ ଜୀବଜନ୍ତୁ ଠାରୁ ମନୁଷ୍ୟର ପ୍ରଭେଦ କେବଳ ଜୀବନକୁ ନେଇ ନୁହେଁ ବରଂ ମନୁଷ୍ୟର ମସ୍ତିଷ୍କକୁ ନେଇ ହୋଇଛି । ସେଥିପାଇଁ ମାନବ ବି ପଶୁମାନଙ୍କର ଏକ ଶାଖା ବା ପ୍ରକାର ହୋଇପାରେ । ମଣିଷର ଆହାର, ବିହାର ଓ ମୈଥୁନ ଆଦି ଅନ୍ୟାନ୍ୟ ପ୍ରାଣୀମାନଙ୍କ ସହିତ ସାମଞ୍ଜସ୍ୟ ରଖୁଛି । ତେଣୁ ମଣିଷ କୌଣସି ତଥାକଥିତ ଈଶ୍ୱରଙ୍କ ଦ୍ୱାରା ସ୍ୱତନ୍ତ୍ର ଭାବେ ଗଠନ ହୋଇଥିବା କଥା ଆଦୌ ତର୍କସଙ୍ଗତ ଲାଗୁନାହିଁ ।

********

# ଧାର୍ମିକ ମେଳା ଓ ପର୍ବ ବେଳେ ବିପଦ

ଧାର୍ମିକ ମେଳା, ଯାତ୍ରା ଏବଂ ବିଭିନ୍ନ ପର୍ବ ପର୍ବାଣୀ ପାଳନ କରୁଥିବାରୁ ଭାରତର ସାରା ଦୁନିଆରେ ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ଆମର 'ସଂସ୍କୃତି' ତଥାକଥିତ ଦେବୀ ଦେବତାଙ୍କ ପର୍ବ ପର୍ବାଣି ସହିତ ଓତପ୍ରୋତ ଭାବେ ଜଡିତ । ସେଥିପାଇଁ ଭାରତର ଜନତା ପର୍ବଗୁଡିକୁ ଆଗ୍ରହ ସହକାରେ ପାଳନ କରିବାକୁ ଅପେକ୍ଷା କରିଥାନ୍ତି । ପ୍ରତ୍ୟେକ ବ୍ୟକ୍ତିଙ୍କର ଆନ୍ତରିକ ଇଚ୍ଛା ଥାଏ ଯେ ପର୍ବ ଓ ମେଳାଗୁଡିକ ନିର୍ବିଘ୍ନରେ, ଶାନ୍ତି ଶୃଙ୍ଖଳା, ହର୍ଷ ଓ ଉଲ୍ଲାସ ସହିତ ସମ୍ପନ୍ନ ହେଉ । କୌଣସି ଅପ୍ରୀତିକର ପରିସ୍ଥିତି ସୃଷ୍ଟି ନହେଉ କିମ୍ବା କୌଣସି ଦୁର୍ଘଟଣା ନ ଘଟୁ ।

ଦୁଃଖ ଓ ପରିତାପର ବିଷୟ ହେଉଛି - ଭାରତରେ ଆୟୋଜିତ ହେଉଥିବା ପ୍ରତ୍ୟେକଟି ଧାର୍ମିକ ମେଳାରେ କିଛି ନା କିଛି ଛୋଟ ବଡ଼ ଦୁର୍ଘଟଣା ଘଟୁଛି । ଏଇଟା ଅବଶ୍ୟ ସତ କଥା ଯେ ଯେଉଁଠି ଅସଂଖ୍ୟ ଆବାଳବୃଦ୍ଧବନିତାଙ୍କ ସମାବେଶ ହେବ, ସେଇଠି ସବୁ ପ୍ରକାର ଅବ୍ୟବସ୍ଥା ଦେଖାଯିବ । ମୁଖ୍ୟ ସମସ୍ୟାଗୁଡ଼ିକ ନିମ୍ନରେ ପ୍ରଦତ୍ତ ହୋଇଛି -

(କ) ଖାଦ୍ୟ - ମେଳାମାନଙ୍କରେ ଅଧିକ ଲାଭ ପାଇବାପାଇଁ ନିମ୍ନମାନର ଖାଦ୍ୟ ବିକ୍ରି କରୁଥିବା ହୋଟେଲ ମାଲିକମାନେ ଯଦିଓ ଆସ୍ତିକ ଶ୍ରେଣୀରେ ଗଣା ହୁଅନ୍ତି କିନ୍ତୁ ନିଜର ଅପକର୍ମପାଇଁ ଜମା ଅପରାଧବୋଧ ଅନୁଭବ କରନ୍ତିନାହିଁ ।

(ଖ) ସ୍ଥାନ - ଋତୁ ଓ ପାଗ ଅନୁସାରେ ଟାଣ ଖରା, ପ୍ରବଳ ବର୍ଷା ଓ ଭୀଷଣ ଶୀତରୁ ରକ୍ଷା ପାଇବାପାଇଁ ଉପଯୁକ୍ତ ବାସ ସ୍ଥାନର ଭୀଷଣ ଅଭାବ ରହିଥାଏ । ଭକ୍ତଙ୍କର ତଥାପି କ୍ଷୋଭ ବା ଆପତ୍ତି ନଥାଏ ।

(ଗ) ଯାତାୟାତ - ମେଳା ସ୍ଥାନକୁ ଯିବା ଆସିବା ପାଇଁ ରାସ୍ତାଘାଟ ଅତି ନିମ୍ନ ସ୍ତରର ହେଉଥିବା ଯୋଗୁଁ, ତୀର୍ଥ ଯାତ୍ରୀଙ୍କ ଯାନବାହାନ ଦୁର୍ଘଟଣା ଗ୍ରସ୍ତ ହୋଇ, ଅନେକ ଧନ ଜୀବନ କ୍ଷତି ହୋଇଥାଏ । ତଥାପି ଭକ୍ତମାନେ ଭାବନ୍ତି - "କଷ୍ଟ କଲେ କୃଷ୍ଣ ମିଳେ ।"

(ଘ) ସ୍ୱାସ୍ଥ୍ୟ - ଅକସ୍ମାତ କେହି ଅସୁସ୍ଥ ହୋଇ ପଡିଲେ ଆଶୁ ଚିକିତ୍ସା ପାଇଁ ପର୍ଯ୍ୟାପ୍ତ ସଂଖ୍ୟାରେ ଡାକ୍ତର ଓ ନର୍ସ ମିଳନ୍ତିନାହିଁ ।

(ଙ) ଭାରତର ବିଭିନ୍ନ ମେଳା ସମୟରେ ଦଳାଚକଟା ଯୋଗୁଁ ହତାହତ ହେଉଥିବା ଭକ୍ତମାନଙ୍କର ସଂଖ୍ୟା ଦେଖିଲେ ମନରେ ପ୍ରଶ୍ନ ଉଠେ - ଭକ୍ତମାନଙ୍କ ଦ୍ୱାରା ଦାନ

କରାଯାଉଥିବା ଲକ୍ଷ ଲକ୍ଷ ଟଙ୍କାରୁ କିଛି ଖର୍ଚ୍ଚ କରି ସେମାନଙ୍କର ସୁରକ୍ଷା ବ୍ୟବସ୍ଥା କରାଯାଉ ନାହିଁ କାହିଁକି ? ଦୁର୍ଘଟଣା ପରେ ମୃତକମାନଙ୍କ ପରିବାରକୁ ପ୍ରଶାସନ ଜନତାଙ୍କ ଟିକସ ପାଣ୍ଠିରୁ କିଛି ଅର୍ଥ ଦାନ କରି ନିଜ ଦାୟିତ୍ୱରୁ ଓହରି ଯାଆନ୍ତି । ଭକ୍ତମାନେ ନିଜକୁ ସାନ୍ତ୍ୱନା ଦେବା ପାଇଁ ଭାବନ୍ତି - "ଯାହାର ଯେଉଁଠି ମୃତ୍ୟୁ ଯୋଗ ଭାଗ୍ୟରେ ଲେଖା ଥାଏ, ସେ ସେଇଠି ହିଁ ମରିବ ଏବଂ ତୀର୍ଥ ସ୍ଥଳରେ ମଲେ ତ ସ୍ୱର୍ଗ ପ୍ରାପ୍ତହେବ । ଶେଷରେ ପରିବାରକୁ କିଛି ଆର୍ଥିକ ସାହାଯ୍ୟ ମଧ୍ୟ ମିଳିବ । ଏହିଭଳି ଚିନ୍ତାଧାରା ମୃତକଙ୍କ ପରିବାରକୁ କ'ଣ ସତରେ ମାନସିକ ଶାନ୍ତି ଦେଇପାରୁଛି ? ମୃତ ବ୍ୟକ୍ତିର କ୍ଷତି ପୂରଣ ମାତ୍ର କିଛି ଟଙ୍କାରେ ହୋଇ ପାରୁଛିକି ?

ଜୀବନ କାଳ ମଧ୍ୟରେ ସମସ୍ତ ସମସ୍ୟାର ସମାଧାନ ଏବଂ ମୃତ୍ୟୁ ପରେ ମୋକ୍ଷ ପ୍ରାପ୍ତ କରି, ସ୍ୱର୍ଗଧାମରେ ଅବସ୍ଥାନ କରାଇବା ଦାବି କରୁଥିବା, ତଥାକଥିତ ମହାମହିମ, ସିଦ୍ଧପୁରୁଷ ବାବାମାନେ କିନ୍ତୁ ମୃତକ ପରିବାରର ଲୋକମାନଙ୍କ ଦୁଃଖ ବୁଝିବା ଦୂରେ ଥାଉ, ସେମାନଙ୍କ ଖବର ମଧ୍ୟ ରଖନ୍ତି ନାହିଁ । ଗୁରୁତ୍ୱପୂର୍ଣ୍ଣ କଥା ହେଉଛି - ପ୍ରତ୍ୟେକ ଥର ଦଳାଚକଟାରେ ଶହ ଶହ ଭକ୍ତ ହତାହତ ହେଉଥିବା ସତ୍ତ୍ୱେ ଜଣେ ବି ସାଧୁ ବା ସନ୍ୟାସୀ ମୃତ୍ୟୁ ବରଣ କରିଥିବା ନଜରକୁ ଆସେ ନାହିଁ କାହିଁକି ? ଏହାର କାରଣ, ସେମାନେ ଜନଗହଳି ଯୋଗୁଁ ସମ୍ଭାବ୍ୟ ବିପଦକୁ ଆଖି ଆଗରେ ରଖି ନିଜକୁ ସୁରକ୍ଷିତ ସ୍ଥାନରେ ଅବସ୍ଥାନ କରାଇଥାନ୍ତି । ତେଣୁ ଦଳାଚକଟାରେ ସେମାନଙ୍କର ମୃତ୍ୟୁ ଘଟିବା ସମ୍ଭାବନା ହିଁ ନଥାଏ । ବାବାମାନେ ଭଲକରି ଜାଣନ୍ତି, ଭକ୍ତମାନେ ମଲେ ସେମାନଙ୍କ ପରିବାରକୁ କ୍ଷତି ପୂରଣ ମିଳିବ କିନ୍ତୁ ଜଣେ ସାଧୁ ମଲେ କ୍ଷତି ପୂରଣ କିଏ କାହାକୁ ଦେବ ? ବରଂ ସେମାନେ ବଞ୍ଚି ରହିଲେ ହିଁ ଧନ ବର୍ଷା ହେଉଥିବ । ମରିଗଲେ ତ ସବୁ ସରିଗଲା । ସେମାନେ ଭଲା ଏତେ ରିସ୍କ କାହିଁକି ନେବେ ? ପ୍ରବଚନ ଦେବାବେଳେ ସିନା କହନ୍ତି - "ସ୍ୱର୍ଗରେ ସବୁ କିଛି ସୁନ୍ଦର, ମାତ୍ର ନିଜେ ହିଁ ସନ୍ଦେହରେ ପଡି ପୃଥିବୀରେ ମିଳୁଥିବା ସୁଖକୁ ବେଶିଦିନ ଉପଭୋଗ କରିବାକୁ ଚାହାନ୍ତି ।

(ଡ) ଧର୍ମସ୍ଥଳ ଅର୍ଥାତ ଭଗବାନଙ୍କ ଘରେ ବି ଚୋର, ବଦମାସ ଓ ଦୁଷ୍ଟ ପ୍ରବୃତ୍ତିର ଲୋକମାନେ ନିର୍ବିଘ୍ନରେ ସେମାନଙ୍କ କାମ କରିପାରନ୍ତି । କେଉଁଠି ମହିଳାମାନଙ୍କ ସହ ଅସୌଜନ୍ୟ ବ୍ୟବହାର ହେଉଛି ତ କେଉଁଠି ମହିଳାମାନଙ୍କ ଦେହରୁ ସୁନାଗହଣା ଚୋରି ହେଉଛି । କେଉଁଠି ପକେଟମାର ହେଉଛି ତ କେଉଁଠି ମାରଧର ହେଉଛି ।

ଏତେ ପ୍ରକାର ବିପଦ ଏବଂ ଅବ୍ୟବସ୍ଥା ସମ୍ପର୍କରେ ତୀର୍ଥଯାତ୍ରୀମାନେ ଆଗରୁ ଅବଗତ ହୋଇ ନଥାନ୍ତି ବୋଲି କହିବା ଭୁଲ ହେବ । ସବୁ ଜାଣି ମଧ୍ୟ ଲୋକମାନେ ଛୋଟ ଶିଶୁ, ବୃଦ୍ଧ ଓ ରୋଗୀଣା ବାପା ମାଆଙ୍କୁ ନେଇ ଯାତ୍ରା ବା ମେଳା ଦେଖିବାକୁ ଯାଇଥାନ୍ତି । ଅର୍ଥାତ ସମସ୍ତ ପ୍ରକାର ରିସ୍କ ନେବାକୁ ଆଦୌ କୁଣ୍ଠା ବୋଧ କରନ୍ତି ନାହିଁ । ସେତେବେଳେ ଭାବନ୍ତି ଆମର କିଛି ବି ହେବନାହିଁ । ଠାକୁର ଆମକୁ ରକ୍ଷା କରିବେ ।

ଏଇଠି ଏକ ମହତ୍ୱପୂର୍ଣ୍ଣ ପ୍ରଶ୍ନ ଉଠୁଛି - ଭକ୍ତମାନେ ଏତେ ବଡ଼ ରିସ୍କ ନେଉଥିବା ପଛରେ ମନସ୍ତାତ୍ୱିକ କାରଣ କଅଣ ?

ସେମାନଙ୍କର ବିଶ୍ୱାସ - ମେଳାକୁ ଯାଇ ଦେବୀ ଦେବତାଙ୍କୁ ପୂଜା ଅର୍ଚ୍ଚନା କଲେ, ସେମାନଙ୍କର ରୁଗଣ ମାତା ପିତା ନିଶ୍ଚୟ ଆରୋଗ୍ୟ ହୋଇଯିବେ, ସମାନଙ୍କର ପିଲାମାନେ ବଡ ହେଲେ ନିଶ୍ଚୟ ଉଚ୍ଚ ଶିକ୍ଷା ପ୍ରାପ୍ତ କରି ଧନବାନ ହୋଇଯିବେ କିମ୍ବା ସେ ନିଜେ ନିଶ୍ଚିତ ଭାବେ ପାରିବାରିକ ଓ ସାମାଜିକ ସମସ୍ୟା ଭୋଗ କରିବେ ନାହିଁ । ଯଦିଓ ଏହି ସବୁ ଆଶାର କୌଣସି ଗ୍ୟାରେଣ୍ଟି ନାହିଁ, ତଥାପି ସେମାନେ ରିସ୍କ ନେବାକୁ ପଛାନ୍ତି ନାହିଁ ।

ଏହା ପଛରେ ଯେଉଁ ବିଜ୍ଞାନ ସମ୍ମତ ମନସ୍ତାତ୍ୱିକ କାରନ୍ତି ରହିଛି, ତାହାକୁ ସେମାନେ ପ୍ରକାଶ୍ୟ ଭାବେ ନମାନିଲେ ମଧ୍ୟ ଅପ୍ରିୟ ସତ କଥା ହେଉଛି - ପିଲାଟି ବେଳୁ ତାଙ୍କ ମନରେ କାଳ୍ପନିକ ଈଶ୍ୱର, ଆତ୍ମା, ପରମାତ୍ମା, ପୁନର୍ଜନ୍ମ, ମୋକ୍ଷ, ସ୍ୱର୍ଗ ଆଦି ମନ ମୋହକ ଶବ୍ଦ ପ୍ରତି ଗଢି ଉଠିଥିବା ଗଭୀର ଆସ୍ଥା ହିଁ, ସମସ୍ତ ପ୍ରକାର ବିପଦ ପ୍ରତି ରିସ୍କ ନେବାକୁ ପ୍ରେରିତ କରିଥାଏ । ସେମାନଙ୍କ ଆସ୍ଥା ଏତେ ଗଭୀର ଯେ ମେଳା ଦେଖି ଫେରିବା ପରେ ଧନ ବା ଜୀବନ କ୍ଷତି ହୋଇଥିଲେ ବି ଅନୁତାପ କରି କହିବେ ନାହିଁ -"ମୁଁ ଅଯଥା ମେଳା ଦେଖିବାକୁ ଯାଇଥିଲି ।" ଧନ ବା ଜୀବନ ନଷ୍ଟ ହେବା ପଛରେ ଅନ୍ୟାନ୍ୟ କାରଣକୁ ଦାୟୀ କରି ନିଜ ମନକୁ ସାନ୍ତ୍ୱନା ଦେବେ । ପୁଣି ଥରେ ମେଳା ଦେଖି ଯିବାକୁ ବି ମନସ୍ଥ କରିବେ ।

ଏହି ବାତୁଳ ଚିନ୍ତାଧାରାକୁ ହେତୁବାଦୀ ମତରେ ମଣିଷର ମାନସିକ ଦିବାଳିଆପଣ ବୋଲି କୁହାଯାଏ । କାରଣ ସେମାନେ ମୃତ୍ୟୁ ପର୍ଯ୍ୟନ୍ତ ଏହି ସତ୍ୟକୁ ସ୍ୱୀକାର କରନ୍ତି ନାହିଁ ଯେ "ମୁଁ ଯଦି ସେ ଦିନ ମେଳା ଦେଖିବାକୁ ଯାଇ ନଥାନ୍ତି ମୋର ଏତେ ବଡ଼ କ୍ଷତି ହୋଇନଥାନ୍ତା ।

ଯାତ୍ରା ବା ମେଳା ବ୍ୟତୀତ ଘରେ ଘରେ ପାଳନ କରାଯାଉଥିବା ପ୍ରତ୍ୟେକ ପର୍ବଗୁଡିକ ମଧ୍ୟ ବିପଦ ମୁକ୍ତ ନୁହେଁ । ହୋଲି ଖେଳରେ ବିଭିନ୍ନ ରାସାୟନିକ ରଙ୍ଗର ବ୍ୟବହାର ଯୋଗୁଁ ମଣିଷର

ଶରୀର କ୍ଷତି ଗ୍ରସ୍ତ ହୋଇଥାଏ । ପର୍ବକୁ ଉପଭୋଗ କରିବାପାଇଁ କେତେକ ଲୋକ ନିଶା ଦ୍ରବ୍ୟ ସେବନ କରି ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିଥାନ୍ତି । ରଙ୍ଗ ଧୋଇବାପାଇଁ ନଦୀ ଓ ପୋଖରୀରେ ଗାଧୋଇବା ବେଳେ, ନିଶା ଗ୍ରସ୍ତ ଲୋକ ପାଣିରେ ବୁଡି ମୃତ୍ୟୁ ବରଣ କରୁଥିବା ଖବର ବି ଶୁଣିବାକୁ ମିଳୁଛି ।

ସେହିଭଳି ଦୀପାବଳି ଦିନ ପ୍ରଚୁର ପରିମାଣର, ବାଣଫୁଟା ଯାଉଥିବା ଯୋଗୁଁ ଅନେକ ପିଲା, ସ୍ତ୍ରୀ ଓ ପୁରୁଷ ବେଳେ ବେଳେ ଦୁର୍ଘଟଣାର ଶିକାର ହୋଇଥାନ୍ତି । କାହାର ଅଙ୍ଗହାନୀ ହେଉଛି ତ କାହାର ଜୀବନ ମଧ ଚାଲି ଯାଉଛି । ମୋଟ ଉପରେ ବାଣର ବିଷାକ୍ତ ଧୂଆଁ ଯୋଗୁଁ ପରିବେଶ ଦୂଷିତ ହୋଇଯାଉଛି । ତାହା ମାନବ ଶରୀରପାଇଁ କ୍ଷତିକାରକ ।

ଦେବୀ ଦେବତାଙ୍କ ନିର୍ଦ୍ଦିଷ୍ଟ ପୂଜା ପର୍ବ ସମୟରେ ମେଢ଼ ତିଆରି କରି ସଡକ ଅବରୋଧ କରିବା, ଉଚ୍ଚ ଧ୍ୱନି ବିଶିଷ୍ଟ ଡ଼ାକବାଜି ଯନ୍ତ୍ର ବ୍ୟବହାର କରି ଧ୍ୱନି ପ୍ରଦୂଷଣ କରିବା, ମୂର୍ତ୍ତି ବିସର୍ଜନ କରିବାପାଇଁ ନଦୀ ଓ ପୋଖରୀ ଜଳକୁ ଦୂଷିତ କରିବା ଆଦି କର୍ମକାଣ୍ଡ ମଣିଷ ପାଇଁ ବିପଦ ହିଁ ବିପଦ ।

ଶେଷରେ ଆମର ବକ୍ତବ୍ୟ ହେଉଛି - ମେଳା ଆୟୋଜନ କିମ୍ବା ପର୍ବ ପାଳନ ଆମ ପରମ୍ପରା ଓ ସଂସ୍କୃତିର ଅଙ୍ଗ । ତେଣୁ ସେଗୁଡିକ ପାଳନ କରିବା ଆବଶ୍ୟକ ନାହିଁ ବୋଲି କହିଲେ, ହୁଏତ ସମସ୍ତଙ୍କୁ ଅପ୍ରିୟ ଲାଗିବ । କିନ୍ତୁ ପ୍ରତ୍ୟେକ ମେଳା ଓ ପର୍ବପାଳନ ବେଳେ ଧନ ଓ ଜୀବନର କୌଣସି କ୍ଷୟକ୍ଷତି ନ ହେଲାଭଳି ସୁନ୍ଦର ଓ ବିକଳ୍ପ ବ୍ୟବସ୍ଥା କରିବା ଉଚିତ । ସମସ୍ତେ ପର୍ବକୁ ଖୁସିର ଉପଭୋଗ କରନ୍ତୁ । ଜନ ସମାଗମକୁ ସୁଚାରୁ ରୂପେ ବ୍ୟବସ୍ଥିତ କରିବାପାଇଁ ମନ୍ଦିର ଓ ପ୍ରଶାସନ ପାଖରେ ଧନର ଅଭାବ ନାହିଁ । ଅଭାବ ରହୁଛି ମନୋବୃତ୍ତିରେ । ଚିନ୍ତା କରନ୍ତୁ କାହାର ମନୋବୃତ୍ତିରେ ଏହି ଅଭାବ ରହୁଛି ?

********

ପ୍ରକାଶିକାଙ୍କ କଲମରୁ....

ବାଲ୍ମୀକି ନାୟକ, ଜଣେ ହେତୁବାଦୀ ଲେଖକ ଭାବେ ଓଡିଆମାନଙ୍କ ଭିତରେ ବେଶ ପରିଚିତ । ଗତ ଚାଳିଶି ବର୍ଷ ଧରି ସେ ହେତୁବାଦୀ ବିଚାରଧାରାକୁ ପ୍ରଚାର ଓ ପ୍ରସାର ଦିଗରେ ପ୍ରୟାସ ରତ । ଅନେକ ପ୍ରକାର ଅମୂଳକ ବିଶ୍ୱାସ ଓ ଅହେତୁକ ଭୟର ମାୟାଜାଲରୁ ମୁକ୍ତହୋଇ, ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କରିବା ଦ୍ୱାରା ସେ ଅଭୂତ ଆତ୍ମବିଶ୍ୱାସ ଲାଭ କରିଛନ୍ତି । ସେହି ସବୁ ଅନୁଭବ ଜନିତ ପ୍ରାପ୍ତ ଜ୍ଞାନକୁ ପ୍ରବନ୍ଧ ଆକାରରେ ପ୍ରକାଶ କରୁଛନ୍ତି । ତାଙ୍କର ତର୍କସଙ୍ଗତ ଓ ବିଜ୍ଞାନସମ୍ମତ ହେତୁବାଦୀ ପ୍ରବନ୍ଧ ଗୁଡିକ ଅସଂଖ୍ୟ ପାଠକ ଓ ପାଠିକାମାନଙ୍କ ଦ୍ୱାରା ଆଦୃତ ହେଇଛି । ଇତି ମଧ୍ୟରେ ତାଙ୍କର ମୋଟ ଆଠ ଖଣ୍ଡ ପ୍ରବନ୍ଧ ସଙ୍କଳନ ପ୍ରକାଶ ପାଇସାରିଛି । ଏହି ପ୍ରବନ୍ଧ ସଙ୍କଳନର ତୃତୀୟ ସଂସ୍କରଣ, ପ୍ରକାଶ କରିବାକୁ ପ୍ରେରଣା ମିଳିଥିବାରୁ, ତାଙ୍କର ପ୍ରିୟ ପାଠକମାନଙ୍କୁ ଅଶେଷ ଧନ୍ୟବାଦ ଜଣାଉଛି ।

ମମତା ନାୟକ